ଚିତ୍ତରଞ୍ଜନ ଦାସ

# ପତ୍ରରେ ଆଳାପ

ସଂପାଦନା

ଡ. ସବିତା ଜେନା

ସୁହୃତ୍ ପ୍ରକାଶନୀ, ଓଡ଼ିଶା

ଚିତ୍ତରଞ୍ଜନ ଦାସ

# ପତ୍ରରେ ଆଳାପ

ସଂପାଦନା

ଡ. ସବିତା ଜେନା

ସୃହୃତ୍ ଗୋଷ୍ଠୀ

ଚିତ୍ତରଞ୍ଜନ ଦାସ

# ପତ୍ରରେ ଆଳାପ -୨'ୟ'

ସମ୍ପାଦନା:
**ଡ. ସବିତା ଜେନା**

ପ୍ରକାଶକ:
**ସୁହୃତ୍ ପ୍ରକାଶନୀ**
ଯୋଗାଯୋଗ : ବରେନ୍ଦ୍ର ନାରାୟଣ ସାହୁ
ବାଖରାବାଦ(ଶାରଳା ମନ୍ଦିର), କଟକ - ୨
ମୋବାଇଲ : ୯୪୩୭୨୦୭୯୦୦

ପ୍ରଥମ ସଂସ୍କରଣ : ଡ଼ିସେମ୍ବର, ୨୦୦୯ (ଶ୍ରମ ଶିବିର)

ମୁଦ୍ରଣ :
**ଶିକ୍ଷା ପ୍ରକାଶନୀ**

ମୂଲ୍ୟ : ଟ.୫୦/- ମାତ୍ର

~~~~~~~~~~~~~~~~~~~~~~~~~~~~~~~~~~~~~~~~

*Chittaranjan Das*
**Patrare Alap**

*Edited by*
**Dr. Sabita Jena**

*Published by*
**Suhrut Prakashani**
Contact - Barendra Narayan Sahoo
Bakharabad (Sarala Mandir)
Cuttack -2, Mob : 9437207900

*First Edition*
December, 2009 (Shrama Sibira)

*Printed by :*
**Siksha Prakashani**

**Price** : Rs. 50/- only
~~~~~~~~~~~~~~~~~~~~~~~~~~~~~~~~~~~~~~~~

# ମୁଖବନ୍ଧ

ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସଙ୍କ 'ପତ୍ରରେ ଆଳାପ' ପୁସ୍ତକଟି ପଢିବା ସମୟରେ ଡକ୍ଟର ବାଉରୀବନ୍ଧୁ କରଙ୍କ ରଚିତ 'ନାନା ଆଲୋଚନା' ପୁସ୍ତକ ଅନ୍ତର୍ଗତ 'ଚିଠିରେ ସାହିତ୍ୟ' ଶୀର୍ଷକରେ ଲେଖକଙ୍କର କେତୋଟି ବାକ୍ୟ ସ୍ମରଣରେ ଆସେ, - "ଆମ ଭାରତ ବର୍ଷରେ ଭଲ ଚିଠିକୁ ସାଇତି ରଖିବାର ଉଚ୍ଚ ପରମ୍ପରା ସେମିତି କିଛି ନାହିଁ କହିଲେ ଚଳେ । ବିବେକାନନ୍ଦ, ମହାତ୍ମା ଗାନ୍ଧୀ, ରବୀନ୍ଦ୍ର ନାଥ ଠାକୁର ଏବଂ ଜବାହରଲାଲ ନେହେରୁଙ୍କ ପରି ଅଳ୍ପ କେତେଜଣ ମନୀଷୀଙ୍କ ଚିଠି ପ୍ରକାଶିତ ହୋଇଛି । ଏ ଭୂମିରେ ସାହିତ୍ୟ ସାଧକମାନଙ୍କ ଚିଠି କ୍ୱଚିତ ଆତ୍ମପ୍ରକାଶ କରିଛି ।"

ଓଡ଼ିଆ ସାହିତ୍ୟ ଜଗତରେ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ ମୁଖ୍ୟତଃ ଜଣେ ପ୍ରାବନ୍ଧିକ, ସମାଲୋଚକ ଓ ଅନୁବାଦକ ଭାବେ ସୁପରିଚିତ । କିନ୍ତୁ ତାଙ୍କ କବିତା ଏବଂ ଗଳ୍ପ ରଚନାର ସଂଖ୍ୟା ସ୍ୱଳ୍ପ ହେଲେ ମଧ୍ୟ ଏସବୁର ସ୍ୱାତନ୍ତ୍ର୍ୟ ରହିଛି । ଏ ପର୍ଯ୍ୟନ୍ତ ତାଙ୍କର ଦିନଲିପି 'ରୋହିତର ଡାଏରୀ' ତ୍ରୟୋବିଂଶ ଖଣ୍ଡରେ ପ୍ରକାଶିତ । ସେ ସାଗର ପଥରେ ଜାହାଜରେ ଯାତ୍ରା କରିବା ସମୟରେ ପ୍ରତିଦିନ ନିୟମିତ କିଛି ଲେଖିବାକୁ ଆତ୍ମୀୟ ସ୍ନେହର ଅନୁଜ ଜଣିକୁ କଥା ଦେଇଥିଲେ । ତା ୯ ।୧୦ ।୬୨ ରୁ ତା ୧୯ ।୧୦ ।୬୨ ପର୍ଯ୍ୟନ୍ତ ଲେଖିଥିବା ଦଶଖଣ୍ଡ ଚିଠିର ସମାହାରରେ 'ସାଗର ପଥ' ପୁସ୍ତକ ପ୍ରକାଶିତ । ଶ୍ରୀଯୁକ୍ତ ଦାସଙ୍କ ନିକଟକୁ ପରିବାର, ପ୍ରବାସ, ନିଜଦେଶ ଏବଂ ଛାତ୍ରମାନଙ୍କଠାରୁ ଆସିଥିବା ଚିଠି ସବୁ 'ସେମାନଙ୍କର ଚିଠି' ପୁସ୍ତକର ରୂପ ଗ୍ରହଣ କରିଛି ।

ଶ୍ରୀଯୁକ୍ତ ଦାସ ଡ଼େନମାର୍କରେ ପଢୁଥିବା ବେଳେ ଘରକୁ ତାଙ୍କ ବଡ଼ ଭାଉଜଙ୍କ ପାଖକୁ ଲେଖିଥିବା ଚିଠି ଗୁଡିକ 'ଡ଼େନମାର୍କ ଚିଠି' ଶୀର୍ଷକ ପୁସ୍ତକରେ ପ୍ରକାଶିତ ।

ଶ୍ରୀଯୁକ୍ତ ଦାସଙ୍କ ସହ ବନ୍ଧୁତାର ଡୋରି କେବେ ଛିନ୍ନ ହେବାର ନୁହେଁ । ଚିଠି ଲେଖିବାରେ ଲେଖକ ଖୁବ୍ ମଜ୍ଜିଯାନ୍ତି, କାରଣ ସେ ପ୍ରକୃତରେ ମଣିଷମାନଙ୍କୁ ହିଁ ଭଲପାଆନ୍ତି । ପୃଥିବୀର ବିଭିନ୍ନ ଦେଶ, ଭାରତର ବିଭିନ୍ନ ରାଜ୍ୟ ଏବଂ ଓଡ଼ିଶାର କୋଣ ଅନୁକୋଣରେ ଥିବା ଭାଇ ଭଉଣୀଙ୍କ ନିକଟକୁ ଚିଠି ଲେଖିବାରେ ସେ ନିଜକୁ ସମର୍ପଣ କରିଦିଅନ୍ତି ତାଙ୍କର ଦିବସର ଅନ୍ୟାନ୍ୟ କାର୍ଯ୍ୟକ୍ରମ ଭଳି । ଚିଠି ଖଣ୍ଡେ ପାଇ

ଉତ୍ତର ଦେବାରେ ସେ ଟିକେ ବିଳମ୍ବ କରି ଦେଲେ ଅସ୍ୱସ୍ତିବୋଧ କରନ୍ତି, କାରଣ ଚିଠିକୁ ସେ ଡାଏଲଗ୍ ଭାବେ ଗ୍ରହଣ କରନ୍ତି । ଚିଠି ମାଧ୍ୟମରେ ସେ ବନ୍ଧୁତାକୁ ନିବିଡ଼ରୁ ନିବିଡ଼ତର କରାଇ ଚାଲିଛନ୍ତି ।

ଓଡ଼ିଶାର କୋଣ ଅନୁକୋଣରେ ଏବଂ ଦେଶ ବାହାରେ ଥିବା ଭାଇଭଉଣୀଙ୍କୁ ଲେଖିଥିବା ଚିଠିସବୁ ଏକତ୍ର ଗୁଂଫିତ ହୋଇ ସୁହୃତ୍ ପ୍ରକାଶନୀ ଦ୍ୱାରା 'ପତ୍ରରେ ଆଳାପ' ପୁସ୍ତକ ପ୍ରକାଶିତ । ପୁସ୍ତକର ମୁଖବନ୍ଧରେ 'ପ୍ରାପ୍ତି' ଯତ୍ନରେ ସାଇତି ରଖିଥିବା ପତ୍ରପ୍ରେରକଙ୍କ ଚିଠିସବୁକୁ ନେଇ ପ୍ରକାଶନର ଉଦ୍ୟମ ହେବା ସମ୍ପର୍କରେ ସବିଶେଷ ବିବରଣୀ ପ୍ରଦାନ କରାଯାଇଛି । ପୁସ୍ତକର ପୃଷ୍ଠବନ୍ଧୀୟରେ ପତ୍ରପ୍ରେରକଙ୍କ ବିଷୟରେ ଏବଂ ସେ ଲେଖିଥିବା ବିଭିନ୍ନ ଚିଠିର ଆଭିମୁଖ୍ୟ ସମ୍ପର୍କରେ ମଧ୍ୟ ସୂଚିତ ହୋଇଅଛି ।

'ପତ୍ରରେ ଆଳାପ' ପୁସ୍ତକଟି ପାଠ କରିବା ସମୟରେ ଶିକ୍ଷାଳୟ, ଶିକ୍ଷା, ଶିକ୍ଷକ, ଛାତ୍ର, ପରିବାରରେ ପରସ୍ପରର ସମ୍ପର୍କ ମଧ୍ୟରେ ଥିବା ସକଳ ସମସ୍ୟା ହୃଦୟଙ୍ଗମ କରି ସମସ୍ୟା ମଧ୍ୟରେ ଆଗକୁ ଚାଲିବାର ପ୍ରେରଣାରେ ପାଠକ ତଲ୍ଲୀନ ହୋଇଥାଏ । ପଚିଶ ଜଣ ଭାଇଭଉଣୀଙ୍କୁ ଲେଖିଥିବା ଚିଠିର ସର୍ବଜନୋପାଦେୟ ଅଂଶଗୁଡ଼ିକ ପ୍ରକାଶିତ ହୋଇସାରିଛି ।

ଏହି ପଚିଶଜଣଙ୍କ ଚିଠି ବ୍ୟତୀତ ଅନେକ ଅପ୍ରକାଶିତ ଚିଠିକୁ ଏକାଠି କରି 'ପତ୍ରରେ ଆଳାପ' ଦ୍ୱିତୀୟ ଭାଗ ପ୍ରକାଶ ନିମନ୍ତେ ସୁହୃତ ଶ୍ରମଶିବିରରେ ନିଷ୍ପତ୍ତି ଗ୍ରହଣ କରାଗଲା । ଏହି ଦ୍ୱିତୀୟ ଭାଗଟି ଶିକ୍ଷା ସମ୍ପର୍କରେ ଭରି ଉଠିବ ବୋଲି ସ୍ଥିରୀକୃତ ହେଲା ।

ପତ୍ରପ୍ରେରକ ଜଣେ ଛାତ୍ରକୁ ଲେଖିଛନ୍ତି "ତେବେ ଆମର ଚେତନା, ନିଜପ୍ରତି ଏବଂ ସଂସାରପ୍ରତି ଆମର ଦୃଷ୍ଟି ବିକଶିତ ହେଉଥିବା ଓ ବଦଳିଯାଉଥିବା ସଙ୍ଗେ ସଙ୍ଗେ ଆମ ଚିଠିର ପ୍ରକୃତି ମଧ୍ୟ ବଦଳି ଯାଉଥିବା ଉଚିତ । ଯେତେବେଳେ ସବୁ ଚିଠି ଏକାପରି ଲେଖା ହୋଇଥାଏ, ସେତେବେଳେ ମନେ ହୁଏ, ଏହି ମହାତ୍ମା କ'ଣ ଏକବର୍ଷ ମଧ୍ୟରେ କୌଣସି ଅନୁଭବରେ ପ୍ରବେଶ କରି ନାହାନ୍ତି - ସେ ନିଜ ଜୀବନରେ କ'ଣ ନିଜକୁ ଓ ପୃଥିବୀକୁ କୌଣସି ପ୍ରଶ୍ନ ପଚାରୁନାହାନ୍ତି ?"

ପତ୍ରପ୍ରେରକ ଶ୍ରୀଯୁକ୍ତ ଦାସଙ୍କର ପ୍ରତ୍ୟେକ ଚିଠିରେ କିଛି ନୂତନତା ରହିଛି । ତାଙ୍କର ଚିଠି ସବୁ ଏକ ଆରେକ ଠାରୁ ସ୍ୱତନ୍ତ୍ର । ଏହା ନିଶ୍ଚିତ ସତ୍ୟ ଯେ ଚିଠିଗୁଡ଼ିକୁ ପଢ଼ିବା ସମୟରେ ପାଠକ ସେହି ଲେଖା ମାଧ୍ୟମରେ ନିଜକୁ ହିଁ ଅନୁଭବ କରିବେ । ଅନୁଭବ କରିବେ ନିଜର ସ୍ଥିତିକୁ । ଏପରି ଅନୁଭବ କରି ଖୁସି ହୋଇ ଆଗକୁ ଅନେକ

ପାହାଚ ଅତିକ୍ରମ କରିବା ନିମନ୍ତେ ନିଜ ମଧ୍ୟରୁ ବାଟ, ବଳ ତଥା ପ୍ରେରଣା ପାଇପାରିବେ । ଏସବୁ ନିଜର କର୍ମଭୂଇଁରେ ବନ୍ଧୁଭଳି ସାହାଯ୍ୟ କରିବେ ।

ପତ୍ରପ୍ରେରକ ଆଗ୍ରା, ପଶ୍ଚିମଜର୍ମାନୀ, ଫିନ୍‌ଲାଣ୍ଡ ଓ ଇସ୍ରାଏଲ୍‌ରେ ଅଧ୍ୟାପନା କାର୍ଯ୍ୟକରି ଆସିଛନ୍ତି । ପୃଥିବୀର ବିଭିନ୍ନ ଶିକ୍ଷାବିତ୍‌ଙ୍କ ପୁସ୍ତକ ଅଧ୍ୟୟନ କରିଥିବା ଏବଂ ଶିକ୍ଷା ବ୍ୟବସ୍ଥାକୁ ତନଖିଥିବା, ମନୋବିଜ୍ଞାନ, ସମାଜବିଜ୍ଞାନ, ଦର୍ଶନ ଓ ବିଭିନ୍ନ ଭାଷାର ସାହିତ୍ୟ ଅଧ୍ୟୟନ କରିଥିବା ଏବଂ ଏପର୍ଯ୍ୟନ୍ତ ଦୈନିକ ନିୟମିତ କିଛି ପୁସ୍ତକ ଅଧ୍ୟୟନ କରୁଥିବା ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ ସର୍ବପ୍ରଥମେ ନିଜକୁ ଜଣେ ଶିକ୍ଷକ ଭାବେ ଗ୍ରହଣ କରିବାରେ ଖୁବ୍ ଆଗ୍ରହୀ ।

ଷଷ୍ଠ ଠାରୁ +୩ ପର୍ଯ୍ୟନ୍ତ ପଢୁଥିବା ୩/୪ଜଣ ଛାତ୍ରଙ୍କୁ ଲେଖିଥିବା ଚିଠି ଅଧ୍ୟୟନ କଲେ ବିସ୍ମିତ ହେବାକୁ ହୁଏ ଯେ କେତୋଟି ବିଷୟରେ ଫେଲ୍ ହୋଇଥିବା ଛାତ୍ରଟି ସହିତ ପତ୍ରପ୍ରେରକ ନିଜକୁ ଏତେସୁନ୍ଦର ଭାବେ ଏକାତ୍ମ କରାଇ ପାରିଛନ୍ତି କିପରି ?

ମନୋବିଜ୍ଞାନ ଓ ସମାଜବିଜ୍ଞାନର ଛାତ୍ରଭାବେ ଯେ ଏପରି ସମଦରଦୀ ଓ ସହାନୁଭୂତି ସମ୍ପନ୍ନ ହୋଇ ଅପରକୁ ସମ୍ମାନ ଜଣାଇ ପାରିଛନ୍ତି ତାହା ନୁହେଁ, ଅନ୍ତର୍ମୁଖୀ ହୋଇ ଏସବୁକୁ ସେ ଅଧ୍ୟୟନ କରିଛନ୍ତି । ଅନ୍ତରର ନିକଟବର୍ତ୍ତୀ ହେବାରେ ଅତିକ୍ରମ କରିଚାଲିଛନ୍ତି ପାହାଚ ପରେ ପାହାଚ । ସକଳ ବିଶୃଙ୍ଖଳା ଓ ଅସଜଡ଼ା ସତ୍ତ୍ୱେ ସେ ସଂସାରକୁ ଭଲପାଇଛନ୍ତି, ଭଲ ପାଇଛନ୍ତି ଜୀବନକୁ । ସେଥିପାଇଁ ତାଙ୍କ ଚିଠିମାନଙ୍କରେ ଅପୂର୍ବ ଜୀବନୀଶକ୍ତି ଭରି ରହିଛି । ଅନ୍ତରର ଭାବ ସ୍ୱତଃ ଛନ୍ଦାୟିତ ହୋଇ ଖୁବ୍ ସରଳ ଏବଂ ସହଜ ଭାବେ ପ୍ରକଟିତ ହୋଇଛି ତାଙ୍କର ଚିଠିମାନଙ୍କରେ ।

+୨ରେ ପଢୁଥିବା ଜଣେ ଛାତ୍ରଙ୍କୁ ଲେଖିଛନ୍ତି "ଅଠର ବର୍ଷ ବୟସରେ ଆମେ ବେଶୀ ଭାବପ୍ରବଣ ହେବା ନାହିଁ । ଭାବଗୁଡିକ ବଢ଼ିଲେ ଭାବପ୍ରବଣତା କମିଯାଏ । ଭାବ ବଢ଼ିଲେ ଜ୍ଞାନ, କର୍ମ ଓ ଶ୍ରଦ୍ଧା ସବୁକିଛି ବଡ଼ ସହଜରେ ହୃଦୟର ବୋଲ ମାନନ୍ତି । ହୃଦୟ ହେଉଛି ମଣିଷର ଅସଲ ଆଖି, ସବୁଠାରୁ ଅଧିକ ଦେଖିପାରେ ଓ ସବୁଠାରୁ ଅଧିକ ସମଗ୍ରଭାବେ ଦେଖିପାରେ । ତା'ପରେ Contradiction ଗୁଡ଼ିକ ମୋତେ Contradiction ପରି ଲାଗେ ନାହିଁ । ଆମ ପୃଥିବୀରୂପୀ ଗୋଲୋକଟିର ଉତ୍ତର ମେରୁ ଓ ଦକ୍ଷିଣମେରୁ କ'ଣ ପରସ୍ପରର Contradiction ? ସେମାନଙ୍କୁ ପରସ୍ପରର ପରିପୂରକ ବୋଲି ଜାଣିବାକୁ ହୁଏ । ସେହି ସମୟଟି ମଧ୍ୟ ଜୀବନରେ ଆସେ ।

'କାଳକୁ କଜ୍ଜଳ' ପଢୁଛ, 'ବିଶ୍ୱକୁ ଗବାକ୍ଷ' ପଢିବା ପାଇଁ ମନ ହେଲାଣି । ସେଗୁଡିକର ମାଧ୍ୟମରେ ନିଜକୁ ଆହୁରି ନିବିଡଭାବେ ବୁଝିପାରିବ । ଜାଣିବ ଯେ, "ମୋ ଭିତରେ ସମ୍ଭବତଃ ସବୁ ମଣିଷଙ୍କ ଭିତରେ ଯେଉଁଟି ସବୁଠାରୁ ଅସଲ, ତାହା ସାରା ପୃଥିବୀରେ ବନ୍ଧୁ ହୋଇ ରହିବାକୁ ଋହେଁ, ସାରା ପୃଥିବୀର କାମରେ ଲାଗିବାକୁ ଇଚ୍ଛା କରୁଥାଏ ।"

ପତ୍ରପ୍ରେରକଙ୍କ ଉପର୍ଯ୍ୟୁକ୍ତ କେତୋଟି କଥାରୁ ତାଙ୍କୁ ଅନୁଭବ କରିହୁଏ ଯେ ପ୍ରକୃତ ବନ୍ଧୁଟିଏ ହୋଇପାରିବାରେ କାହିଁକି ସେ ଏତେ ଆଗ୍ରହୀ ?

ଶ୍ରୀମାନ ପ୍ରଶାନ୍ତ କୁମାର ସାହୁଙ୍କୁ ସପ୍ତମଶ୍ରେଣୀ ଠାରୁ କଲେଜରେ ପଢୁଥିବା ପର୍ଯ୍ୟନ୍ତ ଶ୍ରୀଯୁକ୍ତ ଦାସ ଚିଠି ଲେଖିଛନ୍ତି । ପ୍ରଚଳିତ ଶିକ୍ଷା ପଦ୍ଧତିରେ ବର୍ଷକରେ ପଢିଥିବା ପାଠକୁ ପରୀକ୍ଷା ଖାତାରେ ଉଦ୍‌ଗାରୀ ଦେବାର ସପକ୍ଷରେ ନ ଥାଇ ମଧ୍ୟ ପ୍ରଚଳିତ ପରୀକ୍ଷା ଦେବା ନିମନ୍ତେ ନିଜର ସର୍ବୋତ୍ତମ ଶକ୍ତିମୁତାବକ ପ୍ରସ୍ତୁତ ହେବା ନିମନ୍ତେ ନିର୍ଦ୍ଦେଶ ପ୍ରଦାନ କରିଛନ୍ତି । ଯଥା - "ତୁମେ ଯେଉଁ ପାଠ ପଢୁଛ, ସେଥିରେ ପରୀକ୍ଷା ଦେବାକୁ ହିଁ ପଡେ । ଦେଉଳ ଭିତରେ ପଶି ସେଠାରେ ଥିବା ଠାକୁରଙ୍କୁ ନମସ୍କାର କାହିଁକି କରିବି ବୋଲି କହିବା ଉଚିତ୍ ନୁହେଁ । ତେଣୁ, ନିଜର ସର୍ବୋତ୍ତମ ଶକ୍ତିରେ ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହୁଅ ।"

ଏହିପରି ଭାବେ ପ୍ରଚଳିତ ପରୀକ୍ଷାକୁ ସମ୍ମୁଖୀନ ହେବାକୁ ଯାଉଥିବା କେତେଜଣ ଛାତ୍ରଙ୍କୁ ପତ୍ରପ୍ରେରକ ଚିତ୍ତଭାଇ ସେମାନଙ୍କ ସ୍ତରକୁ ଯାଇ ସମସ୍ତଙ୍କର ବ୍ୟକ୍ତିଗତ ଅନୁଭବକୁ ହୃଦୟଙ୍ଗମ କରି ଅଧିକରୁ ଅଧିକ ଅଧ୍ୟୟନ ନିମନ୍ତେ ଆଗ୍ରହ ସୃଷ୍ଟି କରାଇଛନ୍ତି । ଚିଠି ଗୁଡିକ ପଢିଲେ ଅନୁଭବ କରିହେବ ଯେ ସତେଯେପରି ଚିତ୍ତଭାଇ ନିଜେ ପରୀକ୍ଷା ଦେବାକୁ ଯାଉଛନ୍ତି । ଏହି ଚିଠିଗୁଡିକୁ ଅଧ୍ୟୟନ କରିବା ସମୟରେ ଛାତ୍ରମାନେ ନିଜକୁ ଏବଂ ନିଜର ସମସ୍ୟାକୁ ହୃଦୟଙ୍ଗମ କରି ଅଧିକରୁ ଅଧିକ ଜ୍ଞାନ ଆହରଣ ନିମନ୍ତେ ଆଗ୍ରହୀ ହୋଇପାରିବେ । ଶିକ୍ଷକମାନେ ନିଜକୁ ଚିହ୍ନିପାରିବେ ଏବଂ ଜାଣିପାରିବେ ନିଜର ସ୍ଥିତିକୁ ।

ପ୍ରତ୍ୟେକ ଛାତ୍ରଙ୍କ ନିକଟକୁ ପ୍ରେରିତ ଚିଠିରେ ପ୍ରଦତ୍ତ ଦୁଇଟି ଅନୁବାଦ । ଇଂରାଜୀରୁ ଓଡ଼ିଆକୁ ଏବଂ ଓଡ଼ିଆରୁ ଇଂରାଜୀକୁ ପାଠ କଲେ ଅନୁଭବ ହୁଏ, ଏହା ଛାତ୍ରପାଇଁ ତ ଖୁବ୍ କୌତୁକପ୍ରଦ, ଏତଦ୍‌ବ୍ୟତୀତ ଶିକ୍ଷକ ମଧ୍ୟ ଛାତ୍ରମାନଙ୍କୁ ଇଂରାଜୀ ଭାଷା ଶିକ୍ଷାଦେବାରେ ଅନେକ କୌଶଳ ପାଇପାରିବେ । ଅଧିକାଂଶ ବିଦ୍ୟାଳୟରେ ଅନେକ ଛାତ୍ରଙ୍କର ଇଂରାଜୀ ଭାଷାପ୍ରତି ଭୟ ରହିଥାଏ । ଇଂରାଜୀ ପ୍ରତି ଆଗ୍ରହ ସୃଷ୍ଟି କରିବା ଅର୍ଥ ଭାଷାଟିକୁ ଭଲ ପାଇବା ଏବଂ ତା'ପ୍ରତିଥିବା ଭୟ ଦୂର କରିବା ନିମନ୍ତେ

ପତ୍ରପ୍ରେରକଙ୍କ ଲେଖା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଇଂରାଜୀ ଭଳି ଅନେକ ଛାତ୍ରଙ୍କର ଗଣିତ ପ୍ରତି ମଧ୍ୟ ଭୟ ରହିଥାଏ । ଏଥିନିମନ୍ତେ ମଧ୍ୟ ଉପାଦେୟ ବକ୍ତବ୍ୟ ରହିଛି ।

ଛାତ୍ର ଶ୍ରୀମାନ୍ ଟି. ରବି ପ୍ରସାଦଙ୍କ ପାଖକୁ ପତ୍ରପ୍ରେରକ ବିବେକ ସମ୍ପର୍କରେ ଲେଖିଛନ୍ତି, – "ବୟସ ବଢ଼ିବା ସଙ୍ଗେ ସଙ୍ଗେ ନିଜ ଭିତରେ ନିଜର ବିବେକ ବୋଲି ଗୋଟିଏ ସାଙ୍ଗ ରହିଛି ବୋଲି କ୍ରମେ ଦେଖାଯିବ । ବିବେକ ସହିତ ନିଜର ଡୋରି ଲାଗିଥିଲେ, ଆଗକୁ ସର୍ବଦା ବାଟ ଦିଶି ଯାଉଥିବ । ସବୁବେଳେ ଖୁସି ଲାଗୁଥିବ । ନିର୍ଭୟ ଓ ହାଲୁକା ମଧ୍ୟ ଲାଗିବ । ସେଇଥିରୁ ହିଁ ତୁମେ ନିଜ ଭିତରର ବିବେକ ସହିତ ସଂଯୋଗ ରହିଛି ବୋଲି ଜାଣିବାକୁ ସମର୍ଥ ହେବ । ସେଇ ତୁମକୁ କେତେକେତେ ଭଲ ବହି, ଭଲ ସୁଯୋଗ ପାଖରେ ଆଣି ପହଞ୍ଚାଇ ଦେବ ।"

ଏପରି କଥା ପଢ଼ି କେଉଁ ଛାତ୍ର ଅବା ଅଗ୍ରଗତି ନ କରିବ ? ଚିତ୍ତଭାଇ ମନୋବିଜ୍ଞାନ ଓ ସମାଜବିଜ୍ଞାନର ଛାତ୍ର ଏବଂ ତା'ସହିତ ହୃଦୟ ଏବଂ ବିବେକ ସହିତ ତାଙ୍କର ପରିଚୟ ରହିଛି ବୋଲି ଛାତ୍ରମାନଙ୍କୁ ସେ ଏପରି ଅନୁଭବ ବ୍ୟକ୍ତ କରିପାରିଛନ୍ତି ।

ବିଦ୍ୟାଳୟମାନଙ୍କରେ ଆଧାତ୍ମିକ ଶିକ୍ଷାର ଅଭାବ ରହିଛି ବୋଲି ଅନେକ ଖେଦ ପ୍ରକାଶ କରୁଥିବାବେଳେ ସେ ଛାତ୍ରମାନଙ୍କୁ ଲେଖିଥିବା କଥା ସବୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ମନେ ହୋଇଥାଏ । ଛାତ୍ରଟି ନିଜ ଭିତରେ ରହିଥିବା ଅସଲ ଶକ୍ତିର ପରିଚୟ ପାଇପାରିଲେ ଏବଂ ନିଜ ଭିତରେ ଥିବା ଭଲଗୁଣ ଗୁଡିକର ପରିଚୟ ପାଇପାରିଲେ ତା'ର ପ୍ରତ୍ୟେକ କାର୍ଯ୍ୟ ଆଧାତ୍ମିକତାରେ ଭରି ଉଠିବ । ଏ ଦିଗରେ ଏହି ଚିଠିଗୁଡିକ ଅତ୍ୟନ୍ତ ଉପଯୋଗୀ ।

ଓଡ଼ିଆ ସାହିତ୍ୟ ଅଧ୍ୟୟନ କରୁଥିବା ଛାତ୍ର ଅନ୍ୟ ଭାଷା ଆହରଣ କରିବାକୁ ଓ ସେହି ଭାଷାମାନଙ୍କର ସାହିତ୍ୟ ଅଧ୍ୟୟନ ନିମନ୍ତେ ନିରନ୍ତର ଆଗ୍ରହୀ ହେବାକୁ ପରାମର୍ଶ ପ୍ରଦାନ କରି ଶାନ୍ତିନିକେତନରେ ଅଧ୍ୟୟନ ଏବଂ ଗବେଷଣା କରୁଥିବା ଛାତ୍ର ମନୋରଞ୍ଜନ ସାହୁଙ୍କୁ ଲେଖିଛନ୍ତି । ମନୋବିଜ୍ଞାନର କେତେକ ପୁସ୍ତକ ଅଧ୍ୟୟନ କରିବାକୁ ମଧ୍ୟ ପରାମର୍ଶ ପ୍ରଦାନ କରିଛନ୍ତି ।

ଗବେଷଣାରତ ଶିକ୍ଷକ ସବିତା ଜେନାଙ୍କ ଆଗେ ଗୁରୁ ବା ଶିକ୍ଷକଙ୍କୁ ବ୍ରହ୍ମା, ବିଷ୍ଣୁ ଓ ପରମେଶ୍ୱର ବୋଲି କୁହାଯାଉଥିଲା ଏବଂ ତାହା ଏକ ବିପଜ୍ଜନକ ରୀତି ବୋଲି ଲେଖି ସ୍ପଷ୍ଟ କରିଦେଇଛନ୍ତି । ଲେଖାଲେଖି କରିବା ସମ୍ପର୍କରେ ପତ୍ରପ୍ରେରକଙ୍କ ଗୁରୁତ୍ୱପୂର୍ଣ୍ଣ ବାକ୍ୟ, ଯଥା – "ଯିଏ ଲେଖେ, ସିଏ ତଦ୍ୱାରା ନିଜକୁ ଦେଖିବାର ଦର୍ପଣଟିଏ

ମଧ୍ୟ ପାଇଯାଏ, ନିଜକୁ ଘଷିମାଜି ମନୋମତ କରି ତିଆରି କରିବା ପାଇଁ ଆବଶ୍ୟକ ପଥରଟିଏ ପାଇଯାଏ ।"

ଚିଠିକୁ ଏକ କଥାବାର୍ତ୍ତା ବୋଲି କୁହାଯାଇପାରିବା ସମ୍ପର୍କରେ ଲେଖିଛନ୍ତି, – "ଚିଠିକୁ ମଧ୍ୟ ବହୁ ଦୃଷ୍ଟିକୋଣରୁ ଏକ କଥାବାର୍ତ୍ତା ବା Dialogue ବୋଲି କୁହାଯାଇପାରିବ । Dialogue ଖାଲି ଗୋଟାଏ ପାଖରୁ ଚାଲିପାରେ ନାହିଁ । ତେଣୁ ମୋ ପାଖରୁ ଚିଠିର ଉତ୍ତର ଦେଇ ନପାରୁଥିଲେ ବ୍ୟସ୍ତ ଅବଶ୍ୟ ଲାଗେ ନାହିଁ, ମାତ୍ର କେମିତି କେମିତି ଲାଗୁଥାଏ ।"

ମନଃସ୍ତାତ୍ତ୍ୱିକ ଶବ୍ଦ ଚିନ୍ତନ ଓ ଚିନ୍ତା ସମ୍ପର୍କରେ ତୁଳନାତ୍ମକ ମନ୍ତବ୍ୟ ପ୍ରଦାନ କରିଛନ୍ତି । ଗବେଷଣା ନିମନ୍ତେ ଅଧ୍ୟୟନ କରିବାକୁ ଏବଂ ଶିକ୍ଷକତା ସମ୍ପର୍କରେ ପ୍ରଦାନ କରାଯାଇଥିବା ବାସ୍ତବ ଏବଂ ସତ୍ୟସମ୍ବଳିତ ତଥ୍ୟମାନ ଶିକ୍ଷକ ଓ ଗବେଷକଙ୍କ ନିମନ୍ତେ ଅତ୍ୟନ୍ତ ଉପାଦେୟ ଅଟେ ।

ଶ୍ରୀମତୀ ଜ୍ୟୋତ୍ସ୍ନାମୟୀ ମିଶ୍ରଙ୍କୁ ଦେଇଥିବା ଚିଠି ପଢ଼ିଲେ ଚିତ୍ତଭାଇଙ୍କୁ ଆଉ ପାଦେ ଅଧିକ ଚିହ୍ନି ହୁଏ । ପୂର୍ଣ୍ଣାଙ୍ଗ ଶବ୍ଦର ଅର୍ଥ ସମ୍ପର୍କରେ ଅଧିକ ଗଭୀରକୁ ବୁଝିବା ଲାଗି ପାଠକ ସମର୍ଥ ହୋଇପାରିବେ ।

ଶ୍ରୀଯୁକ୍ତ ନିରଞ୍ଜନ ଖୁଣ୍ଟିଆଙ୍କୁ ଲେଖିଛନ୍ତି, – "ସ୍କୁଲଟିଏ କଲେ ସ୍ରୋତ ବିରୁଦ୍ଧରେ ଯିବାକୁ ପଡିବ । ତଥାପି ଆମେ ଭାଙ୍ଗି ପଡିବା ନାହିଁ । ଯାହାଙ୍କ ଇଛା ଏହି ଉଦ୍ୟମ ପଛରେ ରହିଛି, ସେଇ ଆମର ବଳ ଓ ଶ୍ରଦ୍ଧା ହୋଇ ତାହା ଅଗ୍ରସର କରାଇନେବେ ।" ଚିଠି ଗୁଡିକ ପାଠ କଲେ ପ୍ରତ୍ୟେକ ବିଦ୍ୟାଳୟରେ ରହିଥିବା ସମସ୍ୟାର କାରଣମାନ ଜାଣିବା ସହ ସକଳ ଅଭିମାନକୁ ବହୁଦୂରକୁ ଫିଙ୍ଗିଦେଇ ନିଜକୁ ରାଜୀ କରାଇବାକୁ ଇଛା ହୋଇଥାଏ ।

ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଶିକ୍ଷକ ଶ୍ରୀଯୁକ୍ତ ଦିବାକର ଲେଙ୍କାଙ୍କ ପାଖକୁ ପ୍ରେରିତ ପତ୍ରରେ ବିଦ୍ୟାଳୟ ନିମନ୍ତେ ଦର୍ଶନ, ମନୋବିଜ୍ଞାନ ଏବଂ ଶିକ୍ଷାସମ୍ପର୍କିତ ପୁସ୍ତକର ନାମ ଉଲ୍ଲେଖ ହୋଇଛି, ଯାହାକି ପ୍ରତ୍ୟେକ ବିଦ୍ୟାଳୟ ନିମନ୍ତେ ଖୁବ୍ ଉପାଦେୟ ଅଟେ । ଡକ୍ଟର ଅନନ୍ତ କୁମାର ଗିରିଙ୍କୁ ଲେଖିଥିବା ପତ୍ରରେ ମଧ୍ୟ ଅନେକ ଉପାଦେୟ ପୁସ୍ତକର ନାମୋଲ୍ଲେଖ ରହିଛି ।

ଶ୍ରୀ ଯୁଗଳ କିଶୋର ସାହୁଙ୍କୁ 'ରୋହିତର ଡାଏରୀ' ସମ୍ପର୍କରେ ଲେଖକ ନିଜର ଅନୁଭୂତି ବର୍ଣ୍ଣନା କରିବା ସହ 'ରୋହିତର ଡାଏରୀ' ପୁସ୍ତକ ପଠନ କରିବାର ଶୈଳୀ ସମ୍ପର୍କରେ ସମ୍ୟକ୍ ସୂଚନା ପ୍ରଦାନ କରିଛନ୍ତି ।

ଶ୍ରୀଯୁକ୍ତ ଆଶିଷ ପାଠୀଙ୍କୁ ଦେଇଥିବା ଚିଠିରେ 'ଗପ ଅଗପ' ପୁସ୍ତକ ଅନ୍ତର୍ଗତ 'ନୀଳକଣ୍ଠପୁର' ଶୀର୍ଷକରେ ନିଜର ବାସ୍ତବ ଅନୁଭୂତି ସମ୍ପର୍କରେ ଲେଖିଛନ୍ତି ।

ଶ୍ରୀଯୁକ୍ତ ସଞ୍ଜୟ କୁମାର ପ୍ରଧାନଙ୍କ ଚିଠି ପାଠକଲେ ଏଥିରେ ପ୍ରଦତ୍ତ ଖୁବ୍ ସରଳ ଏବଂ ସୁନ୍ଦର ଉଦାହରଣମାନ ପ୍ରତ୍ୟେକଙ୍କ ହୃଦୟକୁ ସ୍ପର୍ଶ କରିପାରିବ । ଶିକ୍ଷକ ଶ୍ରୀ ଉପେନ୍ଦ୍ର କୁମାର ସାହୁ ଓ ଛାତ୍ରୀ ମଧୁସ୍ମିତା ଗନ୍ତାୟତଙ୍କୁ ଲେଖିଥିବା ଚିଠିରେ ନିଜକୁ ଆବିଷ୍କାର କରିବା ନିମନ୍ତେ ବଳ ପାଇବା ସହ ଶିକ୍ଷକଙ୍କର ଛାତ୍ରମାନଙ୍କ ସହ ସମ୍ପର୍କ ଅଧିକରୁ ଅଧିକ ନିବିଡ଼ ହୋଇ ଉଠିବାରେ ପ୍ରେରଣାଦାୟକ କଥାମାନ ରହିଛି ।

ବିବାହ ଜୀବନକୁ ହାଲୁକା କରିଦେବା ସମ୍ପର୍କରେ ଶ୍ରୀଯୁକ୍ତ ସନ୍ତୋଷ କୁମାର ଗାହାଣଙ୍କୁ ଲେଖିଛନ୍ତି । ସନ୍ତାନର କାର୍ଯ୍ୟ କଳାପକୁ ପିତାମାତା ନିଜେ ଉପଭୋଗ କରିବା ସମ୍ପର୍କରେ ଶ୍ରୀମତୀ ଈଶା ସ୍ୱାଇଁ ଓ ଶ୍ରୀଯୁକ୍ତ ରମାକାନ୍ତ ସ୍ୱାଇଁଙ୍କୁ ଲେଖିଥିବା ଚିଠି ସମସ୍ତଙ୍କ ନିମନ୍ତେ ଖୁବ୍ ପ୍ରେରଣାଦାୟକ ।

ଆଦିବାସୀ ଭାଇ ଭଉଣୀଙ୍କ ଭାଷା ଶିଖିବା ଏବଂ ସେମାନଙ୍କୁ ସ୍ୱପ୍ନ ଦେଖିବାରେ ସହଯୋଗ କରିବା ନିମନ୍ତେ ଶ୍ରୀଯୁକ୍ତ ନାରାୟଣ ବେହେରାଙ୍କୁ ଲେଖିଥିବା ଚିଠି ପ୍ରତ୍ୟେକଙ୍କୁ ନୂତନ ଉତ୍ସାହରେ ଉତ୍ସାହିତ କରାଇବ ।

'ପତ୍ରରେ ଆଳାପ' ପୁସ୍ତକ ଦୁଇଖଣ୍ଡଯାକକୁ ପଢ଼ିବାର ଖୁବ୍ ବେଶୀ ଆବଶ୍ୟକତା ରହିଛି । ଏକ ବ୍ୟତିରେକ ଆରେକ ଅଧୁରା ବୋଧ ହେବ । ଚିଠି ଗୁଡିକୁ ଥରେ ପଢ଼ି ଆଉଥରେ ପଢ଼ିବାବେଳକୁ ନୂଆ ଭଳି ଅନୁଭବ ହେବ । ସ୍ଥିର ଚିତ୍ତରେ ଚିଠିର ପ୍ରତ୍ୟେକ ଧାଡିକୁ ନିଜର ଅନୁଭବକୁ ଆଣି ପାରିଲେ ଯାଇ ସେସବୁ ନିଜର ବନ୍ଧୁପରି ସାହାଯ୍ୟ କରିବେ ।

ଏ ପର୍ଯ୍ୟନ୍ତ ନିୟମିତ ଲେଖି ଆସୁଥିବା ପ୍ରାବନ୍ଧିକ ଶ୍ରୀଯୁକ୍ତ ଦାସଙ୍କ ଲେଖାମାନଙ୍କରେ ନୂତନତାର ସ୍ୱାଦ ଅନୁଭବ ହୋଇଥାଏ । ଏ ସମ୍ପର୍କରେ କାରଣ ଖୋଜି ବସିଲେ ତାଙ୍କ ପତ୍ରମାନଙ୍କରୁ ସ୍ପଷ୍ଟ ଆଭାସ ମିଳିଥାଏ । ତାଙ୍କ ପ୍ରବନ୍ଧରେ ଆଗ୍ରହୀ ପାଠକମାନଙ୍କର କେତେକ ପ୍ରଶ୍ନର ଉତ୍ତର ସହଜ ଏବଂ ସ୍ୱାଭାବିକଭାବେ ଚିଠିଗୁଡିକରୁ ପାଇପାରିବାର ସମ୍ଭାବନା ରହିଛି ।

ପତ୍ରଗୁଡିକର ସଂଗ୍ରାହକ ଆଶିଷଭାଇ (ଶ୍ରୀଯୁକ୍ତ ଆଶିଷ ପାଠୀ) ଚିଠିଗୁଡିକୁ ସମ୍ପାଦନା ନିମନ୍ତେ ଦେବା ସମୟରେ ମୋତେ କହିଥିଲେ, "ଚିଠି ଗୁଡିକ ପଢ଼ି ଆପଣ ଖୁବ୍ ଲାଭବାନ୍ ହେବେ ।" ଏହା ନିରାଟ ସତ । ଚିଠି ଗୁଡିକ ପଢ଼ିବାରେ

ମୁଁ ନିଜକୁ ହଜାଇ ଦେଇଛି ଗତ କେତେ ଦିନ ଧରି । ସେଥିରୁ ଆହରଣ କରିଛି ଅନେକ କିଛି । ଶିକ୍ଷକ ଭାବେ ନିଜକୁ ଦେଖି ଖୁସି ହୋଇଛି ।

ଏଥିନିମନ୍ତେ ସୁହୃତ୍ ଗୋଷ୍ଠୀ, ପତ୍ରପ୍ରେରକ ଚିତ୍ତଭାଇ, ପତ୍ର ସଂଗ୍ରାହକ ଆଶିଷଭାଇ, ପତ୍ର 'ପ୍ରାପ୍ତି' ଭାଇଭଉଣୀ, ସଂପାଦନା କାର୍ଯ୍ୟ ଶୀଘ୍ର ସାରିବାକୁ ତାଗିଦ୍ କରୁଥିବା କୁମୁଦିନୀ ଅପା ଓ ଦାମଭାଇ, ପୁସ୍ତକ ଛାପିବା କାର୍ଯ୍ୟରେ ସହଯୋଗ କରିଥିବା ଭାଇଭଉଣୀ ଏବଂ 'ପତ୍ରରେ ଆଳାପ -୨' ପୁସ୍ତକର ଶ୍ରଦ୍ଧାଶୀଳ ପାଠକ ପାଠିକା ଭାଇଭଉଣୀଙ୍କୁ ମୋର ପ୍ରଣାମ ଜଣାଉଛି ।

ଡକ୍ଟର ସବିତା ଜେନା (ଶିକ୍ଷୟିତ୍ରୀ)

❑❑❑

# ସୂଚୀପତ୍ର

## ଅନନ୍ତ କୁମାର ଗିରି

### ଭୁବନେଶ୍ୱର, ୧୩।୧୧।୯୪

.......ସବୁକଥା ଭଲରେ ଭଲରେ ହୋଇଗଲା । ଏହି ଖବରରେ ମୋର ଆନନ୍ଦ ତୁମର ଆନନ୍ଦ ଠାରୁ ବଳି ପଡିଲା ଭଳି ଲାଗିଲା । ଏଥର ତୁମେ ଆହୁରି ମୁକ୍ତ ହୋଇ ଲେଖିପାରିବ, ଅର୍ଥାତ୍ ଆହୁରି ମୁକ୍ତ ହୋଇ ଦେଖିପାରିବ, ଆହୁରି ମୁକ୍ତ ହୋଇ ନିଜ ଭିତରକୁ ପ୍ରବେଶ କରିପାରିବ । ଏବଂ ତା'ପରେ ଯାହାକିଛି ତୁମର ଲେଖାଦ୍ୱାରା ଅଭିବ୍ୟକ୍ତ ହେବ, ତାହା ଠିକ୍ ତୁମକୁ ହିଁ ଅଭିବ୍ୟକ୍ତ କରିବ ।

ବିଦେଶରୁ ନିଜର ଲୋକ କେହି ଆସୁଥିଲେ ଯେମିତି ତା'ମାଧମରେ ସବୁକିଛି ଫରମାସ କରି ମଗାଇବାକୁ ମନ ହେଉଛି, ମୋତେ ସେହିପରି ଲାଗୁଛି । ତୁମ ପାଖରେ ଅର୍ଥ କେତେ ଅଛି, ମୋର ସେହି ବିଷୟରେ କୌଣସି ଧାରଣା ନାହିଁ । ତଥାପି Journal of Humanistic Psychologyର ଗ୍ରାହକ କରି ଦେବା କଥା ନିଶ୍ଚୟ ମନେ ଥିବ । ତା' ବ୍ୟତୀତ Levy – Straussଙ୍କର ଦୁଇଟି ଲେଖାର ନକଲ । ଇତିମଧ୍ୟରେ ଆଉ ଦୁଇଟି Reference ମଧ୍ୟ ପାଇଛି, ଯାହା କେବଳ ତୁମ ମାଧମରେ Xerox ଦ୍ୱାରା ପାଇହେବ । ସେ ଦୁଇଟି ହେଲା;

1) Jean Piaget : The right to Education in the Modern World, in UNESCO. Freedom and culture, Columbia Univ. press NY, 1951

2) Jean Piaget : The problem of consciousness, Josiah Macy Foundation, NY, 1954

ତୁମେ ଜାଣିଛ, ବହି ବିଷୟରେ ମୋ' ଲୋଭର ସୀମା ନାହିଁ । ତଥାପି ସବୁକିଛି ତୁମପାଖରେ ରହିଥିବା ବଳକା ଅର୍ଥ ପରିମାଣ ଉପରେ ନିର୍ଭର କରିବ ।

### ଭୁବନେଶ୍ୱର, ୧୪।୧୧।୯୭

Gandhi and Kant ବିଷୟଟି ବେଶ୍ କଉତୁକିଆ ଲାଗୁଛି । ତଥାପି, Max Miller  ଭବନ ତରଫରୁ ଯେତେବେଳେ ସେମିନାର୍‌ଟିର ଆୟୋଜନ କରାହେଉଛି, ମୁଁ ଭାବୁଛି, ସେଥିରେ ଯାବତୀୟ ଆଲୋଚନାରେ Kantଙ୍କ ଠାରୁ

କଥାଗୁଡ଼ିକ ପ୍ରଧାନତର ଭାବରେ ଆଣି ଗାନ୍ଧୀଙ୍କ ପାଖରେ focus କରିବାକୁ ହେବ । ସେହି ଅନୁସାରେ ଗାନ୍ଧୀଙ୍କ ବିଷୟରେ ଏହି କେତୋଟି ବହି ତୁମ କାମରେ ଲାଗି ପାରିବ ।

Gandhi – All men are brothers, Delhi Diary

Pyarelbul – The Last Phase

George, S.K. - Gandhiji's Challenge to Christianity

Filleup Muller – Gandhi and Lenin ( Lenin and Gandhi)

Romain Rolland – I will not rest

Kantଙ୍କର The Critique of Practical Reason ସବାଆଗ କାମକୁ ଆସିବ । International Understanding ବିଷୟରେ ତାଙ୍କର ଜର୍ମାନ୍‌ରେ ଏକ ପୁସ୍ତକ ଦେଖିଛି । ହୁଏତ ତା'ର ଇଂରାଜୀ ଅନୁବାଦ ଥିବ । Dr. Ras Bihari Dasଙ୍କ ଲିଖିତ Kantଙ୍କ ଏକ ଉପାଦେୟ ଅଧ୍ୟୟନ ଶାନ୍ତିନିକେତନରେ ପଢ଼ିଥିଲି ।

**କଟକ, ୮।୧।୮୪**

To be acquainted with the karnel that India has to give not through its Legacy, one will do well to start with a few books by A.K. Coomaraswamy, then switch over to Heinrich Zimmer, and through Discovery of India by Nehru, come to more critical books. Some books in Hindi should also be gone through. This will give you a base and will then make a take – off possible.....

## ଅଶୋକ

**ଭୁବନେଶ୍ୱର, ୧୮।୮।୯୬**

........ 'ଉପକାରୀ ଜନ୍ତୁ' ଗପଟି ତୁମକୁ ଭଲ ଲାଗିଲା ଜାଣି ଖୁସି ହେଲି । କେବଳ ଜନ୍ତୁ ନୁହନ୍ତି, ଏଇ ପୃଥିବୀର ଅନେକ ମଣିଷ ମଧ୍ୟ ଅଛନ୍ତି ଯେଉଁମାନେ କି ଅନ୍ୟମାନଙ୍କର କେବଳ ଉପକାର ହିଁ କରନ୍ତି । ଆମେ ବଡ଼ ହୋଇ ସେହିପରି ମଣିଷଟିଏ ହେବାକୁ ଚେଷ୍ଟା କରିବା ।

ତୁମ ନିଜ ବିଷୟରେ କିଛି ଲେଖି ନାହଁ । ତୁମର ଘର, ଗାଆଁ, ତୁମର ପାଠପଢ଼ା, କ'ଣ ଭଲ ଲାଗେ, ତୁମ ଭିତରେ କ'ଣ ସବୁ ଭଲ ଗୁଣ ରହିଛି, ଏସବୁ ଜାଣିଲେ ତୁମକୁ ଅତ୍ୟନ୍ତ ଭଲ ଭାବରେ ଚିହ୍ନିଥିବାପରି ମନେ ହୁଅନ୍ତା, ଦେଖାହେବା ପର୍ଯ୍ୟନ୍ତ ଆଉ ଅପେକ୍ଷା କରିବାକୁ ପଡନ୍ତା ନାହିଁ ।.......

## ଆଶିଷ ପାଠୀ

**କଟକ, ୧୦।୨।୭୯**

.......'ରାଜକୁମାର' ବୋଲି ଗୋଟିଏ ବହି ମୁଁ ଫରାସୀ ମୂଳଲେଖାରୁ ଅନୁବାଦ କରିଛି । ସେଇଟି ଆପଣ ପଢ଼ିଛନ୍ତି ? କଟକ 'ବିଦ୍ୟାପୁରୀ' ସେଇଟିକୁ ପ୍ରକାଶ କରିଛି । ସେହି ବହିଟିକୁ ମୁଁ ବିଭିନ୍ନ ଭାଷାରେ ଶତାଧିକବାର ପଢ଼ିଛି । ଆପଣ ପଢ଼ି ନଥିଲେ ପଢ଼ିବେ । ଆପଣଙ୍କର ଛାତ୍ରମାନଙ୍କୁ ମଧ ପଢ଼ିବା ଲାଗି କହିବେ । ବସ୍ତୁତଃ ତାହା ପିଲାଙ୍କ ଲାଗି ଲେଖା ହୋଇଛି । ଆମ ସମସ୍ତଙ୍କ ଭିତରେ ଯେଉଁ ପିଲା ପ୍ରଚ୍ଛନ୍ନ ହୋଇ ରହିଛି, ବହିଟି ତାହାରି ଉଦ୍‌ବୋଧନ ଲାଗି ଲେଖା ହୋଇଛି । ୪ବର୍ଷ ତଳେ ମୁଁ ଯେତେବେଳେ ଭୁବନେଶ୍ୱର ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଯୋଗ ଦେଲି, ସେତେବେଳେ ସେଠି ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ବସାଇ ସେମାନଙ୍କ ସହିତ ଏହି ବହିଟିକୁ ପଢ଼ିଥିଲି ।

......୧୯୭୬ ମସିହା ମାତୃଭବନ ତାଲିମ କେନ୍ଦ୍ରରେ ମୁଁ ଯେଉଁ ବାକ୍ୟଟି କହିଥିଲି, ସେଇଟି ହେଉଛି: Why Curse the darkness, light a lamp yourself ଅର୍ଥାତ୍ - 'ଅନ୍ଧକାରକୁ ଅଭିଶାପ ଦେଇ କି ଲାଭ, ନିଜେ ଗୋଟିଏ ଦୀପ ଜାଳିଦେବାକୁ ଚେଷ୍ଟା କର ।'

**କଟକ, ୨୩।୬।୭୯**

........ ପିଲାମାନଙ୍କର ପରୀକ୍ଷାଫଳ ଜାଣିଲି । ସମସ୍ତେ ପାସ୍ କଲେ, ଖୁସିର କଥା । କିନ୍ତୁ ସମସ୍ତେ ଏତେ ଅଙ୍କ ନମ୍ବର ରଖି ପାସ୍ କରିବେ କାହିଁକି ? ଶତକଡ଼ା ୫୦କୁ ଯଥାର୍ଥରେ ପାସ୍ କରିବାର ପ୍ରକୃତ ଯୋଗ୍ୟତା ବୋଲି ଧରାଯାଏ, ତେବେ ମୋଟ ଦୁଇଜଣ ପାସ୍ କରିଛନ୍ତି ବୋଲି ଧରିବାକୁ ହେବ । ଏପରି ଏକ ଫଳରୁ ଅଧିକରୁ ଅଧିକ ବିଚାର କଲେ ଅନେକ କିଛି ଅନୁମାନ କରାଯାଇ ପାରିବ । ଯେପରି ମନ ହେଉଛି, ଶିକ୍ଷକ ବା ଛାତ୍ର କାହାରି ହେଲେ ମନ ଯେପରି ଏହି ସଂସାରରେ

ମୋଟେ ନାହିଁ । ସମସ୍ତେ ବାବାଜୀ, ସମସ୍ତେ ଭାରି ଉଦାସୀନ, ତେଣୁ ଏହି ଉପେକ୍ଷା । ପିଲାମାନଙ୍କୁ ମୁଁ ଜାଣିଛି ବୋଲି ଏଗୁଡ଼ାକୁ ଲେଖି ପକାଇଲି । ଆପଣ ଅନ୍ୟଥା କିଛି ମନେ କରିବେ ନାହିଁ ।

କଟକ, ୨୪ ।୭ ।୭୯

........ ଖାଲି ଇଚ୍ଛା କଲେ ଓ ଆପଣା ଲାଗି ଆପେ ଅଗ୍ରଗତି କରିବାର ଏକ ଶୃଙ୍ଖଳା ବାହାର କରିପାରିଲେ ହେଲା । ଶ୍ରୀ ଅରବିନ୍ଦଙ୍କ ଦୁର୍ଗାସ୍ତୋତ୍ରରେ ଅସୁରପରି ଶକ୍ତି ଲାଗି ପ୍ରାର୍ଥନା କରାଯାଇଛି । ନିଜକୁ ଏପରି ଏକ ମାର୍ଗରେ ପକାଇ ପାରିଲେ ଦେଖିବେ, ଆପଣଙ୍କ ପାଖକୁ ପାଠ ପଢ଼ି ଆସୁଥିବା ପିଲାଏ ମଧ୍ୟ ଆପଣଙ୍କ ଦ୍ୱାରା କିପରି ହଜାର ହଜାର ଗୁଣ ଅଧିକ ପରିମାଣରେ ଉପକୃତ ହୋଇପାରିବେ । ପିଲାଏ ଭଲ ପଢୁ ନାହାନ୍ତି, ଏଥିଲାଗି କାହାର କେତେ ଦୋଷ ତାହା ନ ମାପି ଆମେ ଯଦି ନିଜ ଜୀବନରେ ବିଦ୍ୟା ଲାଗି ଗୋଟାଏ ଗୋଟାଏ ଅସୁରପରି ଲାଗିଯାଇ ପାରିବା, ତେବେ ଅଦ୍‌ଭୂତ ଫଳ ଫଳିବ ।.....

କଟକ, ୧୯ ।୩ ।୮୦

......୧୯୪୯ ମସିହାରେ ମୁଁ ନୀଳକଣ୍ଠପୁର ଯାଇଥିଲି । ଲେଖାଟି ତାହାରି ପରେ ପରେ ଲେଖିଥିଲି । 'କୃଷି' ହେଉଛି କୃଷି ପ୍ରଧାନ । ସେହି ରାତିର ଗୁଳିକାଣ୍ଡରେ ମରିଥିବା ନୀଳକଣ୍ଠପୁରର ଆଉ ଜଣେ ଯୁବକ ସେ ।

କଟକ, ୨୦ ।୮ ।୮୦

.... ସେଠାରେ ଲାଇବ୍ରେରୀରୁ ଆପଣଙ୍କୁ ଅନେକ ବହି ପଢ଼ିବାକୁ ମିଳିବ । ମୋର ଇଚ୍ଛା, ଶିକ୍ଷା ବିଷୟରେ ବୈଜ୍ଞାନିକ ଓ ଆଧୁନିକ ବିଚାର ସହିତ ପରିଚିତ ହେବାଲାଗି ଆପଣ ବିଧିବଦ୍ଧ ଭାବରେ କେତେକ ବହି ପଢ଼ିବେ । ତେବେ ଆମ ପୂର୍ଣ୍ଣାଙ୍ଗ ଶିକ୍ଷାକୁ ମଧ୍ୟ ଆପଣ ଆହୁରି ଅଧିକ ଗଭୀର ଭାବରେ ବୁଝିପାରିବେ । ପ୍ରପତ୍ତିଙ୍କ ପାଖରେ Learning to be ବୋଲି ଖଣ୍ଡେ ପୁସ୍ତକ ଅଛି । ଆପଣ ସେଇଟିକୁ ପଢ଼ିବେ ।.....

କଟକ, ୫ ।୨ ।୮୧

.......ଆପଣ ଲେଖା ଆରମ୍ଭ କଲେଣି, ତାହା ହିଁ ସବୁଠାରୁ ବଡ଼ ଖୁସିର ଖବର । ବର୍ତ୍ତମାନ ଯେତିକି ଲେଖୁଛନ୍ତି, ତା'ଠାରୁ ତିନିଗୁଣ ଅଧିକ ଲେଖାହେବ । ନିଜ

ଗଭୀରକୁ ଯେତିକି ଶ୍ରଦ୍ଧାର ସହିତ ପ୍ରବେଶ କରିପାରିବେ, ଲେଖିବାରୁ ସେତିକି ଖୁସି ଓ ସେତିକି ଶକ୍ତି ମିଳିବ ।......

ଭୁବନେଶ୍ୱର, ୭ ।୪ ।୯୬

.........କ'ଣ ନ କରିବା ଉଚିତ ଉପରେ ଆଖିଟାକୁ ଏତେ ମାଡି ରଖିଥିଲେ, କ'ଣ କରିବା ଉଚିତଟା ହୁଏତ ତଳେ ପୋତି ହୋଇଯିବ । କିଏ କ'ଣ ନ ହେବା ଉଚିତ୍, ତାହାରି ବିଷୟରେ ନିଜକୁ ଆକ୍ରାନ୍ତ କରି ରଖିଥିଲେ ତାକୁ ଖୁବ୍ ବେଶୀ ସାହାଯ୍ୟ କରି ହେବ ନାହିଁ । ବରଂ ତା ବିଷୟରେ ନାନା ଭୁଲ୍ ଧାରଣା ହିଁ ତାକୁ ଆମ ପାଖରେ disturbed କରି ରଖିଥିବ । ଏବଂ, ପାଠ କହୁଛି, ମଣିଷ ନିଜ ଭିତରେ ଯାହା ଲୁଚାଇ, ଦବାଇ ରଖିବାକୁ ଚେଷ୍ଟା କରୁଥାଏ, ଅନେକ ସମୟରେ ସେଇଟାକୁ ହିଁ ଅନ୍ୟ କାହାଭିତରେ ଏତେ ବଡ଼ କରି ଦେଖେ ଏବଂ ସେଥିରୁ କିଞ୍ଚିତ ଆନନ୍ଦ ମଧ୍ୟ ପାଉଥାଏ । ତୁମେ ବିଚାର କରିବ ।....

## ଈଶା ସ୍ୱାଇଁ

**ଭୁବନେଶ୍ୱର, ୯ ।୧ ।୧୯୯୭**

.........ଶିଶୁଟି ଠାରୁ ଶିଖିବ, ତା'ର କ୍ରମବିକାଶକୁ ଖୁସି ହୋଇ ଦେଖିବ ଓ ତାହାରି ସହିତ ନିଜେ ମଧ୍ୟ ବିକଶିତ ହୋଇ ଚାଲିଥିବ । ଏହିପରି ଭାବରେ ନିର୍ମଳଭାବରେ ଅନ୍ୟଜଣେ ଲାଗି ନିଜ ଜୀବନକୁ ବଞ୍ଚିବାର ବଡ଼ ଶିକ୍ଷାଟି ମଧ୍ୟ ଶିଖି ହୋଇଯିବ । ବହି ସାହାଯ୍ୟ କିରବ ସିନା, ବାଟ ବତାଇ ପାରିବ ନାହିଁ । ଆତ୍ମୀୟତା ବଢୁଥିବା ସଙ୍ଗେ ସଙ୍ଗେ ବାଟ ଦିଶି ଯାଉଥିବ । ବହିରୁ ତଥ୍ୟ ନେଇ ଛୁଆର ଦାୟିତ୍ୱ ନେଲେ ଛୁଆ ଅଣନିଃଶ୍ୱାସୀ ହୋଇଯିବ ।....

## ଉପେନ୍ଦ୍ରକୁମାର ସାହୁ

**କଟକ, ୯ ।୧୦ ।୭୯**

.......ସେଦିନ ହାଇସ୍କୁଲରେ ବି ଆପଣ ମୋ ଲାଗି ଟିକିଏ ସମୟ ରଖିଲେ, ସେଥିଲାଗି ଆପଣଙ୍କୁ ଅନେକ କୃତଜ୍ଞତା ଜଣାଉଛି । ଆପଣ ମନ କଲେ ବୋଲି ସେତକ ହୋଇ ପାରିଲା । କିନ୍ତୁ ପିଲାମାନଙ୍କୁ ଆମେ ଯାହା କହିବା, ସେମାନେ ତତ୍‌କ୍ଷଣାତ୍ ତାହାକୁ କାହିଁକି ଯେ ମନଦେଇ ଆଗ୍ରହକରି ଶୁଣିବେ, ମୁଁ ତାହା ମୋଟେ ବୁଝିପାରେ ନାହିଁ ।

ପରିଚୟ ହେବାକୁ ହେଲେ ବ୍ୟକ୍ତି ସହିତ ବ୍ୟକ୍ତିର ପରିଚୟ ହେବା ଉଚିତ୍ । ଆମେ ଆମ ସ୍କୁଲର ପିଲାମାନଙ୍କୁ, ସେମାନେ ଯେତେ ସାନ ହୋଇଥାଆନ୍ତୁ ପଛକେ, ବ୍ୟକ୍ତିଭାବରେ ଚିହ୍ନିଲେ ସିନା ସେମାନେ ଆମକୁ ଆପଣାର ବୋଲି ଅନୁଭବ କରିବେ । ସେ ଆତ୍ମୀୟତା ନ ଆଣିଲେ କିଛି ହେବ ନାହିଁ ।

.....ଆମେ ଯେଉଁମାନେ ଏହି କାମଟିରେ ଆସି ଏକତ୍ର ହୋଇଛୁ । ସେମାନେ ପରସ୍ପରକୁ କେବେହେଲେ ଛାଡି ଦେବା ନାହିଁ । କାରଣ ଯାହାଙ୍କ ଇଚ୍ଛାରେ ଆମେ ଏକତ୍ର ହୋଇଛୁ, ଆମକୁ ପୁନର୍ବାର ଅଲଗା କରିଦେବା ତାଙ୍କର ମୋଟେ ଇଚ୍ଛା ନୁହେଁ । ଆମ ଦ୍ୱାରା ତାଙ୍କର କିଛି କାମ ହୋଇପାରିବ ବୋଲି ସିଏ ଆମକୁ ଏକାଠି କରିଛନ୍ତି । ଆମ ଭିତରେ ହଜାରେ ଅପୂର୍ଣ୍ଣତା ଥିଲେ ମଧ୍ୟ ଆମକୁ ଏକାଠି କରିଛନ୍ତି । ଏହାକୁ ଆମେ ଆମପ୍ରତି ତାହାଙ୍କର କରୁଣା ବୋଲି ଜାଣିବା ଏବଂ ନିଜର କର୍ତ୍ତବ୍ୟ କରିବା ।.......

**କଟକ, ୨୩ ।୭ ।୮୫**

........ଆମର ସଂଗ୍ରାମ ବ୍ୟକ୍ତିବିଶେଷଙ୍କ ସହିତ ନୁହେଁ । ସଂଗ୍ରାମ ପୁରାତନ ରୀତି ସହିତ । ତେଣୁ କେଉଁଠି କେଉଁ ବ୍ୟକ୍ତିଙ୍କ ପାଖରେ ଆମେ ସାମୟିକ ଭାବରେ ପରାସ୍ତ ହୋଇଗଲା ବୋଲି ଲାଗିଲା, ସେଥିରେ ଏତେ ବ୍ୟସ୍ତ ହୋଇପଡି ଆମେ ଆଦୌ ଶକ୍ତି କ୍ଷୟ କରିବା ନାହିଁ । ଆମେ ନୂତନର ପକ୍ଷରେ ରହିଥିବା ପର୍ଯ୍ୟନ୍ତ ଅର୍ଥାତ୍ ନୂତନ ଉପରେ ବିଶ୍ୱାସ ରଖିଥିବା ପର୍ଯ୍ୟନ୍ତ ଶେଷକୁ ଆମରି ବିଜୟ ସୁନିଶ୍ଚିତ ଭାବରେ ହେବ । ତୁମେ ନିଜ ଭିତରେ ଆଦୌ ଏତେ ଦଗ୍ଧ ଏବଂ ଦୁଃଖିତ ହୋଇ ପଡିବ ନାହିଁ । ଆମେ ପ୍ରସ୍ତୁତ ହୋଇ ରହିଥିବା ପର୍ଯ୍ୟନ୍ତ ଆମ ଲାଗି ଅବଶ୍ୟ କାର୍ଯ୍ୟ ରହିଥିବ ।

........ ମୁଁ ଭାବୁଛି, ବିଦ୍ୟାଳୟର ଛାତ୍ରାବାସ ଚାଲିଛି । ତୁମ ସମସ୍ତଙ୍କୁ ଏକାଠି କରି ସମସ୍ତଙ୍କର ଉଦ୍ୟମରେ ତାହା ଚାଲିଛି । ସ୍କୁଲ ଆରମ୍ଭବେଳେ ଯେଉଁମାନେ ଥରେ ନିଜକୁ ସେହି କାର୍ଯ୍ୟରେ ନିବେଦନ କରିଦେଇଥିଲେ, ଯେତେଯାହା ଘଟିଲେ ମଧ୍ୟ ସେମାନେ କଦାପି ଫାଶ କାଟି ପଳାଇଯାଇ ପାରିବେ ନାହିଁ । ପ୍ରତ୍ୟକ୍ଷ ବା ପରୋକ୍ଷ ସେହିମାନଙ୍କର ମନନରେ ହିଁ ବିଦ୍ୟାଳୟ ଚାଲିବ । ତେଣୁ ସେମାନଙ୍କ ଭିତରେ ଅନ୍ୟମାନଙ୍କ ତୁଳନାରେ ଅନେକ ଅଧିକ ସାହସ, ବିଶ୍ୱାସ ଓ ସହିବା ଶକ୍ତି ରହିଥିବା

ଦରକାର । ଯିଏ ସବୁଠାରୁ ଅଧିକ ସହ୍ୟ କରିବ, ସବୁଠାରୁ ଅଧିକ ପରିମାଣରେ ତାହାରି ଲୋଡ଼ା ପଡ଼ିବ ।.......

**ଉପେନ୍ଦ୍ର ବିଶ୍ୱାଳ**

**ଭୁବନେଶ୍ୱର, ୧୩।୬।୯୧**

.......ସବୁ କାମ, ସବୁ ଭଲକାମ, ପ୍ରଥମେ ଅଳପଙ୍କୁ ନେଇ ହୋଇଥାଏ ଏବଂ ତାହା କ୍ରମେ ଅନ୍ୟମାନଙ୍କ ଆଡ଼କୁ ସଂକ୍ରମିତ ହୋଇଯାଏ ।

ପୁରାତନ ଛାତ୍ରମାନେ ହିଁ ଅଲଗା ଅଲଗା ହୋଇ ରହିଥିବା ଏହି ତିନୋଟିଯାକ ଅନୁଷ୍ଠାନ ଭିତରେ ଯୋଗସୂତ୍ର ହୋଇ ରହିବେ । ଅସହଜକୁ ସହଜ କରିବେ ଓ କୁଟିଳକୁ ସରଳ କରିବେ । ପ୍ରଧାନତଃ ତୁମର ଏବଂ ପ୍ରଦୀପର ବିଶେଷ ଉଦ୍ୟମ ହିଁ ସମସ୍ତଙ୍କୁ ଏକାଠି କରିବା ଦିଗରେ ଏତେ ବାଟ ଆସିଲାଣି ।

ପରୀକ୍ଷା ଫଳ ବାହାରିବା ସମୟ ନିକଟ ହୋଇ ଆସୁଥିବା ସେହି କ୍ଷେତ୍ରରେ ମୂଳଦୁଆକୁ ସୁଦୃଢ଼ କରି ଗଢ଼ିବାକୁ ହେବ । ତୁମ କଥାରେ ସମସ୍ତେ ମୂଲ୍ୟ ଦେବେ ଓ ତୁମମାନଙ୍କ ଦ୍ୱାରା ପୃଥିବୀରେ ବହୁତ କାର୍ଯ୍ୟ ସମ୍ଭବ ହୋଇପାରିବ ।....

**ଭୁବନେଶ୍ୱର, ୨୭।୭।୯୭**

........ପରୀକ୍ଷାଟା ଦେଇ ତା'ପରେ ଆଉ ଯାହାକିଛି କରିବ ବୋଲି ଯଦି ସ୍ଥିର କରିଛ ତେବେ ବର୍ତ୍ତମାନ ସେହି ପରୀକ୍ଷା ସକାଶେ ପ୍ରସ୍ତୁତ ହେବାରେ ହିଁ ଯଥାସମ୍ଭବ ଅଧିକ ଶକ୍ତି ଓ ସମୟ ଦେଇପାରିବା ଉଚିତ୍ । ଅଗଷ୍ଟ ରହୁଁ ରହୁଁ ଆସି ପହଞ୍ଚି ଯିବ । ତେଣୁ ବର୍ତ୍ତମାନ ତୁମ ଆଗରେ ସେହି ଗୋଟିଏ କାର୍ଯ୍ୟକ୍ରମ ରହୁ । ଅନ୍ୟାନ୍ୟ ସବୁକାମ ପାଇଁ ପରେ ମଧ୍ୟ ସମୟ ମିଳିବ । ପୃଥିବୀରେ ବହୁତ ଭଲକାମ ଏକାବେଳେକେ କରିବେ ବୋଲି କେତେକ ମନୁଷ୍ୟ ଏପରି ବିହ୍ୱଳ ହୋଇଯାଆନ୍ତି ଯେ ସେମାନେ ପରବର୍ତ୍ତୀ ଅତ୍ୟାବଶ୍ୟକ କାର୍ଯ୍ୟଟିକୁ ଅବହେଳା କରିବାରେ ଲାଗିଥାନ୍ତି । ତୁମେ ଆଉ ସେପରି କରିବ ନାହିଁ ।

**ଭୁବନେଶ୍ୱର, ୩୦।୮।୯୭**

.........ତୁମେମାନେ ସଂପୃକ୍ତଥିବା ଶିକ୍ଷାନୁଷ୍ଠାନ ଗୁଡ଼ିକୁ ଯୋଡ଼ି ଆଣିବାରେ ତୁମ

ପୁରାତନମାନଙ୍କର ଓ ବିଶେଷତଃ ତୁମର ବହୁମୂଲ୍ୟ ଉଦ୍ୟମ ଓ ଅବଦାନ ରହିଛି ବୋଲି ମୁଁ ସମସ୍ତଙ୍କୁ ସବୁବେଳେ କହିଛି । ଦୂରରୁ ଥାଇ କେତେ ଖୁସି ହୋଇଛି । ତୁମମାନଙ୍କ କଥା ଭାବି ଗର୍ବ ଅନୁଭବ କରିଛି । ମାତ୍ର, ମୁଁ ଭାବେ, ପାଠ ପଢ଼ା ସରିବା ପର୍ଯ୍ୟନ୍ତ ଆମର ସବୁଠାରୁ ଅଧିକ ଶକ୍ତି ଓ ସମୟ ପଢ଼ାରେ ହିଁ ଖର୍ଚ୍ଚ ହେବା ଉଚିତ୍ । ତୁମମାନଙ୍କର ପରୀକ୍ଷାଫଳ ଆହୁରି ଅଧିକ ଭଲ ହେବା ଉଚିତ୍ । ମୋର ଏହି ଇଛାଟାକୁ କ'ଣ ତୁମେ ଏକ ଦୋଷ ବୋଲି କହିବ ? ଏବେ ସମୟ ଏପରି ହେଲାଣି, ନିଜର ଟିପ ଓ ଅଣ୍ଟା ଟାଣ ନହେଲେ ତୁମ କଥାକୁ କେହି ଗୁରୁତ୍ୱ ଦେବେ ନାହିଁ ଓ ତୁମକୁ ନିଜର ପରିକର ପରି ବ୍ୟବହାର କରିବେ । ତୁମମାନଙ୍କ ଉପରେ ପରାକ୍ରମ ବିସ୍ତାର କରିବେ । ତେବେ ମୁଁ ଚାହେଁ ଉପେନ୍ଦ୍ର ତା ପରୀକ୍ଷାରେ ଭଲ, ଆହୁରି ଭଲ ଫଳ ଦେଖାଇ ମୋର ଛାତିକୁ ଫୁଲାଇ ଦେଉ । ଏଥରୁ ମୋ ଦୁଃଖ ଓ ଅଭିଯୋଗ ଗୁଡିକୁ ବୁଝିପାରୁଥିବ । ଏପରି କରି ମୁଁ ଯଦି କୌଣସି ଅନ୍ୟାୟ କରୁଥାଏ, ତେବେ ମନ ଖୋଲି ଲେଖିବ । Pre-degree ଫଳ ବାହାରିଲେ ସେହି ଅନୁସାରେ ଶେଷ ବର୍ଷର ପରୀକ୍ଷା ଲାଗି ପ୍ରସ୍ତୁତି ଆରମ୍ଭ କରିଦେବ । ସେଥିପାଇଁ ଅଧିକ ସମୟ ଦେବ । ଆଉ ସବୁକଥା ପଛକୁ ଅପେକ୍ଷା କରିପାରିବ ।...

**ଭୁବନେଶ୍ୱର, ୮ ।୦୮ ।୯୯**

.....ପରିସ୍ଥିତି ଯାହା ହେଉ ପଛକେ, ଆମେ ନିଜକୁ କଦାପି ହୀନ ବା ହତଭାଗ୍ୟ ବୋଲି ଭାବିବା ନାହିଁ । ସେପରି କରି ନିଜର ହିଁ ସବୁଠାରୁ ଅଧିକ କ୍ଷତି କରିବା । ମୁଁ ଭାବୁଛି, ତୁମେ କମ୍ପ୍ୟୁଟର ପାଠଟା ପୂରା କରିଦିଅ, ଏବଂ ଇତିମଧ୍ୟରେ ଦୀପୁ ପାଖକୁ ମୁଁ ଯାଇ ଲେଖ ସେଠାରେ ସେ ତୁମ ପାଇଁ କିଛି ଚେଷ୍ଟା କରିପାରିବ କି ନାହିଁ । ଏବଂ, ବର୍ତ୍ତମାନ ଯେତିକି ଖାଲି ସମୟ ପାଉଛ, ତାହାକୁ ଇଂରାଜୀ ଭାଷାକୁ ଆହୁରି ଭଲ ଭାବରେ ଆୟତ୍ତ କରିବା ପାଇଁ ଖର୍ଚ୍ଚ କର । ରାଜ୍ୟ ବାହାରକୁ ଗଲେ ତାହା ତୁମକୁ ଖୁବ୍ ସାହାଯ୍ୟ କରିବ । ନିଜ ଦେହକୁ କହିବ ଯେପରି ସିଏ ଏତେ ସହଜରେ ଅସୁସ୍ଥ ହେବ ନାହିଁ । ତେବେ ନିଜକୁ ନେଇ ତୁମେ କେତେ ଆଡେ କେତେ ପରୀକ୍ଷା କରିପାରିବ । ତୁମେ ତାକୁ ନିଜର ଦେହପରି କେତେ ଶ୍ରଦ୍ଧାର ସହିତ ଦେଖିଲେ ସିଏ ତୁମ କଥା ଅବଶ୍ୟ ମାନିବ ।.......

## କେଦାରନାଥ ଭୂୟାଁ

**ଭୁବନେଶ୍ୱର, ୧୩ ।୩ ।୮୯**

........ଜୀବନକୁ ଅନୁଭବ କରି ଯାବତୀୟ ଟେକ୍‌ନିକ୍‌ରୁ ଉର୍ଦ୍ଧ୍ୱରେ ରହି ଯେ ଭଲ ଗଳ୍ପ ଲେଖାଯାଇପାରେ, ତାହାର ପରିଚୟ ମିଳିଲା । ମାତ୍ର, ଆପଣମାନେ ଆହୁରି ଲେଖିବେ, ଅର୍ଥାତ୍ ଅଧିକ ପଢ଼ିବେ ଓ ଅଧିକ ଗଭୀର ଭାବରେ ଜୀବନକୁ ବୁଝିବେ । ଜୀବନ ସହିତ ଯଥାର୍ଥ ଭାବରେ ଜଡିତ ହୋଇପାରିଲେ ଯାଇ ଜୀବନକୁ ବୁଝିହୁଏ । ଅନେକ ଗଳ୍ପ ଲେଖକ ଜୀବନର ବାହାରେ ଛିଡ଼ା ହୋଇ ଜୀବନକୁ ବୁଝିବାର ପ୍ରୟାସ କରନ୍ତି । ଆପଣମାନେ ସେପରି କରିବେ ନାହିଁ ।

ନିଜକୁ ଆପଣ ଜଣେ ପୀଡିତ ମନୁଷ୍ୟ ବୋଲି କାହିଁକି ଭାବୁଛନ୍ତି ? ଆମ ଘରିପାଖରେ ଯେଉଁ ତଥାକଥିତ ସନ୍ତୁଷ୍ଟ ମଣିଷମାନେ ବୁଲୁଛନ୍ତି, ପ୍ରକୃତ ଅର୍ଥରେ ସେହିମାନେ ହେଉଛନ୍ତି ପୀଡିତ । ସେମାନେ ଜୀବନରେ ଭିତରକୁ ଭେଦିବାକୁ ଭୟ କରୁଛନ୍ତି । ତେବେ, ଖୋଳପାଟିରେ ହିଁ କେତେ ଉଜ୍ଜ୍ୱଳ ଦିଶୁଛନ୍ତି । ଭିତରେ ପ୍ରାୟ ଅପଚରା ହୋଇ ରହିଛନ୍ତି ।

## ଖଗେଶ୍ୱର ଗିରି

**ଭୁବନେଶ୍ୱର, ୮ ।୪ ।୯୫**

ଗତ Test ରେ ତୁମେ ରଖିଥିବା ନମ୍ବର ଯେତେ ରହିଛି, ତୁମେ ଆଉ ଟିକିଏ ଇଚ୍ଛା କଲେ, ବୋର୍ଡ଼ ପରୀକ୍ଷାରେ ସେଥିରୁ ଅନେକ ବେଶୀ ନମ୍ବର ରଖିପାରିବ । 'ମୋ' ସାଙ୍ଗମାନେ ଏତେ ଏତେ ନମ୍ବର ରଖୁଛନ୍ତି, ମୁଁ କାହିଁକି ସେପରି ନ ରଖିପାରିବି, - ନିଶ୍ଚୟ ରଖିପାରିବି" ବୋଲି ନିଜ ଭିତରେ ବାରମ୍ବାର ଭାବୁଥିଲେ ତୁମର ସବୁ ବଦଳିଯିବ । ଗଣିତ ଓ ଇଂରାଜୀରେ ତୁମକୁ କାହିଁକି ପାଠ ଗୁଡିକୁ ବୁଝିବା କଷ୍ଟକର ହେଉଛି, ମୁଁ ଗଲାମାତ୍ରକେ ମୋତେ କହିବ । ଆମେ ଦୁହେଁ ତା'ପରେ ଏକାଠି ମିଶି ଚେଷ୍ଟା କଲେ ସେହି ଅସୁବିଧା ଅନେକ ପରିମାଣରେ ଦୂର ହୋଇଯିବ ।....

## ଶ୍ରୀଯୁକ୍ତ ଗୋବିନ୍ଦ ପଟେଲ

**ଭୁବନେଶ୍ୱର, ୧୩ ।୧୨ ।୯୪**

........ମଣିଷମାତ୍ରକେ ସମସ୍ତଙ୍କ ଭିତରେ ଦିବ୍ୟ ସତ୍ତା ରହିଛନ୍ତି । ତେଣୁ ଆମେ

କୌଣସି ମନୁଷ୍ୟକୁ ଅସୁର ବୋଲି କହିବା ନାହିଁ । ସବୁରି ଭିତରେ ସବାଆଗ ଓ ସର୍ବପ୍ରଧାନ୍ ଭାବରେ ଦିବ୍ୟସତ୍ତାକୁ ହିଁ ଦେଖିବେ । ତଦ୍ୱାରା ଆମର ମଧ୍ୟ ଉପକାର ହେବ । ତାହା ଆମ ନିଜ ଅଗ୍ରଗତିରେ ସାହାଯ୍ୟ କରିବ । ........

**ଭୁବନେଶ୍ୱର, ୨ ।୩ ।୯୫**

.........ଯେଉଁଠାରେ ଯଥାର୍ଥ ମନୋଭାବ ନେଇ ଆମେ ଯାହାକିଛି କାର୍ଯ୍ୟ କରିବା, ତାହା ଆମ ଅଗ୍ରଗତିରେ ନିଶ୍ଚୟ ସାହାଯ୍ୟ କରିବ । ଏବଂ, ଏହିପରି ଭାବରେ ଅଗ୍ରଗତି କରୁଥିବା ସଙ୍ଗେ ସଙ୍ଗେ ଆମେ ଭଗବାନଙ୍କର ମଧ୍ୟ ନିକଟବର୍ତ୍ତୀ ହେଉଥିବା । ଆମ ଆଖିରେ ପୃଥିବୀ ନୂଆ ପ୍ରକାରେ ଦେଖାଯାଉଥିବ ।

**ଭୁବନେଶ୍ୱର, ୨ ।୮ ।୯୫**

.......ଆମେ ଯେତିକି ପରିମାଣରେ ଜ୍ଞାନ, ଭକ୍ତି ଓ କର୍ମରେ ଅଧିକ ଶକ୍ତିମାନ ହେଉଥିବା, ଆମ ଦ୍ୱାରା ଭଗବାନଙ୍କର କାର୍ଯ୍ୟ ସେତିକି ଅଧିକ ସୁଯୋଗ୍ୟ ଭାବରେ ହେଉଥିବ । ତେଣୁ, ନିଜକୁ ଅଧିକ ଯୋଗ୍ୟ କରିବା ହେଉଛି ସର୍ବପ୍ରଧାନ ସାଧନ । ଏଥିରେ ଆମେ ପରସ୍ପରକୁ ସବୁପ୍ରକାର ସାହାଯ୍ୟ କରିବା ।.........

**ଭୁବନେଶ୍ୱର, ୨୮ ।୨ ।୯୬**

.........ପ୍ରତ୍ୟେକ ଜାଗାରେ ଆମେ ସମସ୍ତେ ଏକାଠି ବସିବା, ଆମ ଆଗରେ ଆସି ପହଞ୍ଚୁଥିବା ସମସ୍ୟାଗୁଡ଼ିକ ବିଷୟରେ ଆଲୋଚନା କରିବା ଏବଂ ତାହା ଅନୁସାରେ ସବୁକିଛି ନିଷ୍ପତ୍ତି ଗ୍ରହଣ କରୁଥିବା, - ତେବେ ଆମର କାର୍ଯ୍ୟକ୍ରମ ଗୁଡ଼ିକ ଉତ୍ତମ ଭାବରେ ଚାଲିପାରୁଥିବ ଏବଂ ସେହି ଅନୁସାରେ ଆମ ପ୍ରତ୍ୟେକଙ୍କର ମଧ୍ୟ ଅଗ୍ରଗତି ହେଉଥିବ । ମଣିଷ ମଣିଷ ଭିତରେ ଦୂରତା ରହିଥିବା ପର୍ଯ୍ୟନ୍ତ ଏହି ପୃଥିବୀରେ ଯଥାର୍ଥ କାର୍ଯ୍ୟ ବେଶୀ କିଛି ହୋଇ ପାରେ ନାହିଁ ।........

**ଭୁବନେଶ୍ୱର, ୧୭ ।୧୦ ।୯୬**

.......ପୃଥିବୀରେ ବିଚିତ୍ର ସଂସ୍କାର ରହିବ ହିଁ ରହିବ । ସେହି ଅନୁସାରେ ସତ୍ୟକୁ, ଭଗବାନଙ୍କୁ ମନୁଷ୍ୟମାନେ ବିଚିତ୍ର ଭାବରେ ବୁଝିବେ । କିଏ ଭିତରେ ଦେଖିବ ଓ କିଏ ବାହାରେ ଦେଖିବ । ଉଭୟେ ନିଜକୁ ଏକମାତ୍ର ଠିକ୍ ବୋଲି କହୁଥିବେ ।

ତେଣୁ ଆପଣ ମଧ୍ୟ ଏଗୁଡିକୁ ଦେଖନ୍ତୁ ଓ ନିଜ ଅନ୍ତରର ପରମ ଦେବତାଙ୍କ ପାଖରେ ଠିଆ ହୋଇ ମୁରୁକି ହସୁଥାଆନ୍ତୁ ।

**ଭୁବନେଶ୍ୱର, ୧୩।୧।୯୭**

..........ଶ୍ରମଶିବିର ଗୋଟିଏ ବିଦ୍ୟାଳୟ ପରି । ଅବଶ୍ୟ ଆମ ବିଦ୍ୟାଳୟମାନଙ୍କରେ ବଡ଼ ସାନ ଥାଏ, ମାତ୍ର ଶିବିରରେ ତାହା ନଥାଏ । ଶିବିରରେ ସମସ୍ତେ ସମସ୍ତଙ୍କ ଠାରୁ ଶିଖିବେ । କେହି ପୂର୍ଣ୍ଣ ହୋଇ ସେଠାକୁ ଯାଏ ନାହିଁ । ଆମ ସମସ୍ତଙ୍କ ଭିତରେ ବହୁତ ଅପୂର୍ଣ୍ଣତା ରହିଥାଏ, ଆମେମାନେ ତେବେ ସୁଦ୍ଧା ଶିବିରକୁ ଯାଇ ପାରୁ । ପରସ୍ପରଠାରୁ ଉତ୍ସାହ ଲାଭ କରୁ । ଏହା ଆମ ପ୍ରତ୍ୟେକଙ୍କୁ ଆଗକୁ ଯିବାରେ ସାହାଯ୍ୟ କରେ, କାହାର କେଉଁ ଖୁଣ ରହିଗଲା, ତାହା ନ ଦେଖି ଗୁଣଗୁଡିକୁ ଦେଖିବା । ଏବଂ, ଯାହାକୁ ନିଜ ବିଷୟରେ କିଛି କହିବା କଥା, ସେ କଥା କେବଳ ତାହାକୁ ହିଁ କହିବା । ତେବେ ଆମ ସାମୂହିକ ଜୀବନ ବହୁତ ସ୍ୱଚ୍ଛ ହୋଇପାରିବ ।.....

**ଭୁବନେଶ୍ୱର, ୧୨।୧୦।୯୭**

........ଅନ୍ୟମାନଙ୍କ ବିଷୟରେ ବେଶୀ ଆଖି ନ ଦେଇ ଆମେ ନିଜ ବାଟରେ ସର୍ବଦା ଅଗ୍ରଗତି କରୁଥିବା, ଏହାହିଁ ଉନ୍ନତିର ସବୁଠାରୁ ଭଲ ଉପାୟ । ନିଜେ ଆଗକୁ ଯାଉଥିଲେ ଅନ୍ୟମାନଙ୍କର ଖରାପ ଅପେକ୍ଷା ଭଲଟା ହିଁ ଅଧିକ ଦେଖାଯାଏ ଏବଂ ସେଥିରୁ ବହୁତ ଉତ୍ସାହ ମିଳେ ।

.......ଆପଣ ଶିବିରକୁ ନିଶ୍ଚୟ ଆସିବେ । ବନ୍ଧୁମାନଙ୍କର ମେଳରେ କିଛି ସମୟ ରହିଲେ ଓ ସ୍ୱାର୍ଥରହିତ ଭାବରେ ଏକାଠି କିଛି କାମ କଲେ ତାହା ନିଜ ପାଇଁ ମଧ୍ୟ ବହୁତ ଉପକାର କରିଥାଏ । ମୁଁ ନିଜ ଜୀବନର ଅନୁଭୂତିରୁ ତାହା ଜାଣିଛି ।.......

**ଭୁବନେଶ୍ୱର, ୨।୪।୯୮**

........ଅନ୍ୟ ମନୁଷ୍ୟମାନଙ୍କୁ ଦେଖିଲେ ଯେତେବେଳେ ଆପଣାଛାଏଁ ଖୁସି ଲାଗିବ, ସେମାନଙ୍କର ଅଭାବ ବା ଦୋଷକୁ ନ ଦେଖି ଆଗ ଗୁଣଗୁଡିକ ହିଁ ଦେଖାଯିବ, ସେଥିରୁ ଜାଣିବେ ଯେ ନିଜ ଭିତରେ ସବୁକିଛି କ୍ରମେ ଶାନ୍ତ ହୋଇଆସୁଛି । ଏହାକୁ ଆପଣ ମଧ୍ୟ ଏକ ପରୀକ୍ଷା ପରି ଗ୍ରହଣ କରିପାରିବେ ।.......

## ଚତୁର୍ଭୁଜ ସାହୁ

**ଭୁବନେଶ୍ୱର, ୫ ।୩ ।୯୫**

.........ଶିକ୍ଷାକେନ୍ଦ୍ରରେ ଘର କାମ ଆଗେଇ ଚାଲିଛି, ଏହା ଆମ ସମସ୍ତଙ୍କ ପାଇଁ ଅତ୍ୟନ୍ତ ଆନନ୍ଦର କଥା । ସମସ୍ତେ ମିଶିଲେ ଯେଉଁ ଅଦ୍‌ଭୂତ ଆତ୍ମସ୍ପନ୍ଦନଟି ସୃଷ୍ଟି ହୁଏ, ତାହାହିଁ ମଣିଷ ଭିତରେ ଭଗବତ୍ ବଳ ଆଣି ଦେଇଥାଏ ।.........

**ଭୁବନେଶ୍ୱର, ୧୦ ।୭ ।୯୫**

.........ସାମୟିକ ଭାବରେ ସମସ୍ୟା ରହୁଥିବ, ତଥାପି ସେଗୁଡ଼ିକ କୌଣସି ପ୍ରକାରେ ଆମର ଗତିଶୀଳତାକୁ ବନ୍ଦ କରି ପାରିବ ନାହିଁ । ଆପଣମାନେ ପ୍ରତ୍ୟେକ ଏହି ଯାବତୀୟ କାର୍ଯ୍ୟରେ ଗୋଟିଏ ଗୋଟିଏ ଖୁଣ୍ଟପରି ଅନୁଭବ କରୁଥିଲେ ଓ ସେହି ଅନୁସାରେ ନିଜର ଦାୟିତ୍ୱ ହୃଦୟଙ୍ଗମ କରୁଥିବା ପର୍ଯ୍ୟନ୍ତ ସବୁ ଚାଲିଥିବ । ଆମେ ସର୍ବଦା ଆମ ଦୋଷ ଗୁଡ଼ିକୁ ନ ଦେଖି ପରସ୍ପରକୁ ଆଗକୁ ଯିବାରେ ସାହାଯ୍ୟ କରୁଥିବା ପର୍ଯ୍ୟନ୍ତ ସବୁ ଠିକ୍ ଚାଲିବ ।.......

**ଭୁବନେଶ୍ୱର, ୩୧ ।୧୦ ।୯୫**

Wind, Sand and Stars ମୋ ନିଜ ପାଖରେ ନାହିଁ । ମୁଁ ସେହିଟିକୁ ବାଙ୍ଗାଲୋର ଜେଲ୍‌ରେ ପଢ଼ିଥିଲି । 'ମିତ୍ରସ୍ୟ ଚକ୍ଷୁଷା' ବହିରେ ସମ୍ଭବତଃ ତାହା ଉଲ୍ଲେଖ କରିଛି ।

ଶିକ୍ଷାକେନ୍ଦ୍ରର କାର୍ଯ୍ୟଗୁଡ଼ିକ ଆଗେଇ ଚାଲିଛି ଜାଣି ଅତ୍ୟନ୍ତ ଖୁସି ଲାଗିଲା । ଆପଣ ପୁଣି ଏବେ ନିୟମିତ ଭାବରେ ପିଲାମାନଙ୍କର କ୍ଲାସ୍ ନେଲେଣି । ସମ୍ପୃକ୍ତ ସମସ୍ତେ ଯେତିକି ସକ୍ରିୟ ଭାଗ ନେବେ, ତଦ୍ୱାରା ଆମ ସମସ୍ତଙ୍କର ସେତିକି ଅଗ୍ରଗତି ହେବ ଏବଂ ଅଗ୍ରଗତି ହେଲେ ବହୁ ସମସ୍ୟାର ସମାଧାନ ହୋଇଯିବ ।...........

## ଜୟନାରାୟଣ ପାଣିଗ୍ରାହୀ

**ଭୁବନେଶ୍ୱର, ୨୫ ।୧୦ ।୮୯**

........ ଆମେ ଆଗ ସଂସାର ସହିତ ଛନ୍ଦି ହୋଇ ରହିଥିବା, ସେଠା ଘାଣ୍ଟିହେବାରୁ କିଞ୍ଚିତ ଫୁରୁସତ୍ ମିଳିଲେ ଯାଇ ଭଗବାନଙ୍କ କାମ ବୋଲି ଯାହାକୁ କହୁଛୁ, ତାହା

କରୁଥିବା, ସେଥିରେ ଗୋଟିଏ ଆନ୍ଦୋଳନ କଦାପି ଚଳି ପାରିବ ନାହିଁ । ବରଂ, ସମୟ ଓ ବୟସ ଗଡିଯାଉଥିବା ସଙ୍ଗେ ସଙ୍ଗେ ଆମ ମନ ଭିତରେ ବହୁ ଦୁର୍ବଳତା ଆସି ପ୍ରବେଶ କରୁଥିବ । ମୁଁ ତ ଗତବର୍ଷ ଡିସେମ୍ବର ଠାରୁ ଆପଣଙ୍କ ଲାଗି ଅପେକ୍ଷା କରି ବସିଛି । ଓଡ଼ିଶାରେ ଆମେ ୧୫/୨୦ ଜଣ ଏଭଳି ବ୍ୟକ୍ତି ଖୁଣ୍ଟି ହୋଇ, ଜ୍ଞାନଦୀପ୍ତ ଓ ସକ୍ରିୟ ହୋଇ, ଆମର ସମୟକୁ ସବାଆଗ ଏହି କାର୍ଯ୍ୟଟି ପାଇଁ ବାହାରି ପାରିଲେ କେତେ କ'ଣ ସମ୍ଭବ ହୋଇପାରିବ । ଆପଣ ସେଠାରୁ ବାହାରି ପାରିଲେ ଅରୋବିହାର କେତେ କେତେ ପ୍ରକାରେ ଏକ କର୍ମକେନ୍ଦ୍ରରୂପେ, ଆନ୍ଦୋଳନର ଆସ୍ଥାନ ରୂପେ ବ୍ୟବହୃତ ହୋଇପାରିବ । ଯେଉଁ ସଂଗଠନ ହେଉ ନାହିଁ ବୋଲି ଆମେ ଏତେ କ୍ଷୋଭ କରୁଛୁ, ସେଇଟି ମଧ୍ୟ କେତେ ସ୍ୱାଭାବିକ ଭାବରେ ହୋଇଯିବ । ବହୁ ସମସ୍ୟା ତାହାରି ଦ୍ୱାରାହିଁ କଟିଯିବ । ଆମର ଶ୍ରଦ୍ଧା ଅନୁଯାୟୀ ଆମକୁ ଉଚିତ୍ ସହକର୍ମୀ ମଧ୍ୟ ମିଳିଯିବେ ।

ଆପଣଙ୍କ ଦ୍ୱାରା ଯେ ସତକୁ ସତ ବହୁତ କିଛି ସମ୍ଭବ ହୋଇପାରିବ, ସେ କଥା ମୁଁ ଆପଣଙ୍କ ସହିତ ପରିଚୟ ହେବା ସମୟ ଠାରୁ ଜାଣିଛି । ଏଗାର ବର୍ଷ ତଳର କଥା । ଏହି ଏଗାର ବର୍ଷ ଭିତରେ ଆପଣ ୧୧୧ଟା ପାହାଚ ଉଠି ଆସନ୍ତେଣି । ଆପଣଙ୍କ ପଛକୁ ଏଗାର ଗଣ୍ଡା ସହଧର୍ମୀ ସହକର୍ମୀ ବାହାରି ପାରନ୍ତେଣି । ଆପଣ ନିଜ ଭିତରେ ଥିବା ଆପଣଙ୍କର ସର୍ବୋତ୍ତମ କେନ୍ଦ୍ରଟିର ଆହ୍ୱାନ ଓ ନିବେଦନକୁ ସବାଆଗ ମାନିବାକୁ ନିଷ୍ପତ୍ତି କଲେ ଏକଥା ଆଜି ମଧ୍ୟ ହୋଇପାରିବ ।......

**ଭୁବନେଶ୍ୱର, ୭।୧୨।୮୯**

........ଆମର କାମ ମାଧ୍ୟମରେ ଆମେ ସ୍ୱୟଂ ଅଗ୍ରଗତି କରିବା । ମତଭେଦ ଅବଶ୍ୟ ହେବ । ମତଭେଦ ରହିବା ସ୍ୱାସ୍ଥ୍ୟର ଲକ୍ଷଣ । ମନୋମାଳିନ୍ୟ ନ ହେଉଥିବା ପର୍ଯ୍ୟନ୍ତ ମତଭେଦ ରହିଲେ ଆଦୌ କୌଣସି କ୍ଷତି ନାହିଁ । ପରସ୍ପରର ମତକୁ ନିଷ୍କପଟ ଭାବରେ ବ୍ୟକ୍ତ କରିବା ଦ୍ୱାରା ହିଁ ଆମେ ପରସ୍ପରକୁ ବୁଝିବା, ପରସ୍ପରର ନିକଟବର୍ତ୍ତୀ ହେବା ଏବଂ ପରସ୍ପରର ଅଗ୍ରଗତିରେ ସାହାଯ୍ୟ ମଧ୍ୟ କରିପାରିବା ।

ସୁହୃତ୍ ଗୋଷ୍ଠୀ ଏହିସବୁ ବିଷୟରେ ସଚେତନ ହୋଇ ନିଜର କିଛି ବିଶେଷ କାର୍ଯ୍ୟକ୍ରମ ଆରମ୍ଭ କରିଥିଲା । ତାହା ଆଜିକୁ ପାଞ୍ଚବର୍ଷ ତଳର କଥା । ଶ୍ରୀ ଅରବିନ୍ଦ ଓ ମାଆଙ୍କ ରଚନାବଳୀକୁ ଭିତ୍ତିକରି ସେଗୁଡ଼ିକର ଅଧ୍ୟୟନ ଦ୍ୱାରା ଆମ ମନର

ଗଣ୍ଠିସବୁ ଫିଟିଯିବ ଓ ତେବେ ଆମେ ଅଧିକ ଆନ୍ତରିକତାର ସହିତ କାର୍ଯ୍ୟରେ ମିଳିତ ହୋଇପାରିବା । ପ୍ରଥମେ ଆମେ ଏହାକୁ ସବୁଠାରୁ ଅଧିକ ଗୁରୁତ୍ୱ ଦେଇଥିଲୁ । ଶ୍ରମଶିବିର ସେଇଥିରୁ ଜନ୍ମଲାଭ କଲା । ଆପଣ ଯଦି କୌଣସି ଗୋଟିଏ ଶିବିରରେ ସଂପୂର୍ଣ୍ଣ ସମୟ ରହି ପାରିଥାନ୍ତେ, ତେବେ ତାହା ନିଶ୍ଚୟ ହୃଦୟଙ୍ଗମ କରିଥାନ୍ତେ । ଏହି କାର୍ଯ୍ୟକ୍ରମ ବର୍ତ୍ତମାନ କାହାର ଜଣକର କାର୍ଯ୍ୟକ୍ରମ ହୋଇନାହିଁ । ଆମେ ଦାୟିତ୍ୱଗୁଡିକୁ ପରସ୍ପର ମଧ୍ୟରେ ବାଣ୍ଟି ନେଇଛୁ ଓ ସମସ୍ତଙ୍କର ମିଳିତ ଉଦ୍‌ଯୋଗ ଓ ନେତୃତ୍ୱରେ କାର୍ଯ୍ୟ ଚାଲିଛି । ଏହା ଆହୁରି ଅଧିକ ଉତ୍ସାହରେ ଚାଲିବ, ମାତ୍ର ସଂପୂର୍ଣ୍ଣ ବିକେନ୍ଦ୍ରିତ ଭାବରେ ଚାଲିବ । କାର୍ଯ୍ୟକ୍ରମର ଶାଖାପ୍ରଶାଖା ମଧ୍ୟ ଖୋଲି ଯାଉଥିବ ।..........

**ଭୁବନେଶ୍ୱର, ୧୭ ।୬ ।୯୧**

..........ଟ୍ରଷ୍ଟର ବୈଠକ ଓ କାର୍ଯ୍ୟକ୍ରମ ବିଷୟରେ ଆପଣଙ୍କର ପ୍ରତିକ୍ରିୟା ଜାଣିଲି । ଅତି ଅଳ୍ପ ମଣିଷ ଟ୍ରଷ୍ଟ ପାଇଁ ସମୟ ଦେଉଛନ୍ତି । ଅଧିକାଂଶ ସମୟ ବାହାରେ ରହୁଛନ୍ତି । ଆପଣ ତ ନିଜେ ଲେଖିଛନ୍ତି ଯେ ଆପଣ ଦୀର୍ଘଦିନ ପରେ ଟ୍ରଷ୍ଟ ବୈଠକକୁ ଆସିଲେ । ତେଣୁ ନିଜକୁ ବିଦେଶୀ ବିଦେଶୀ ଲାଗିଥିବ । ସକ୍ରିୟ ଭାବରେ ଅଧିକ ବ୍ୟକ୍ତି ସମୟ ଦେଇପାରିଲେ ଓ ପୂର୍ଣ୍ଣାଙ୍ଗ ଶିକ୍ଷାର ଯଥାର୍ଥ ଆବଶ୍ୟକତା ଗୁଡିକ ବିଷୟରେ ଚିନ୍ତାକଲେ ସିନା ଟ୍ରଷ୍ଟର ଯାବତୀୟ କାର୍ଯ୍ୟ ଏକ ନୂତନ ଧାରାରେ ପଡିପାରିବ ।.........

**ଭୁବନେଶ୍ୱର, ୨୦ ।୭ ।୯୯**

.......ଶିକ୍ଷାର ଯାବତୀୟ ପ୍ରୟୋଗର ସାଙ୍ଗରେ ଆଉ କେତେଜଣ ନ ରହିଲେ ବହୁତ କିଛି ବିଗିଡିଯିବାର ଆଶଙ୍କା ରହିଛି । ଆଗ ସାଥୀରୂପେ କେତେଜଣଙ୍କୁ ପାଇବାକୁ ହୁଏ ଓ ତା'ପରେ ଏକାଠି ହୋଇ ବାଟ ଚାଲିପାରିଲେ ବହୁତ ସମାଧାନ ମିଳିଯାଏ । ପୂର୍ଣ୍ଣାଙ୍ଗ ଶିକ୍ଷାରେ ଅଧିକାଂଶ କେନ୍ଦ୍ରରେ ସେହି ଅଭାବଟି ରହିଛି ।.......

**ଭୁବନେଶ୍ୱର, ୨୯ ।୧୧ ।୯୯**

.........ଶିକ୍ଷା ଶିବିରରେ ସମସ୍ତେ ଏକାଠି ବସିବେ ଏବଂ ସମସ୍ତଙ୍କର ସମ୍ମତି ଅନୁସାରେ ଗୋଟିଏ ବିଷୟର ଅଧ୍ୟୟନ ହେବ । ଆଲୋଚନାରେ ସମସ୍ତେ ଭାଗ ନେବେ । ବସିବା ବେଳେ ଆମେ ପରସ୍ପରର ବନ୍ଧୁ ପରି ବସିବା । ବ୍ୟକ୍ତିଗତ ସ୍ତରରେ ଯେତେ ମତାନ୍ତର ରହିଥିଲେ ମଧ୍ୟ ଆଦୌ କୌଣସି ମାଳିନ୍ୟଭାବ ନ ରଖି ଆଲୋଚନାର

ମାଧ୍ୟମରେ ପରସ୍ପରକୁ ସାହାଯ୍ୟ କରିବା । ସବୁ ମତକୁ ସମ୍ମାନ ଦେବା । ତେବେ ଦେଖିବେ, ସେହି ଆଲୋଚନା ଆମ ସମସ୍ତଙ୍କ ପାଇଁ କେତେକେତେ ଦୁଆର ଖୋଲି ଦେଇ ଯିବ । ଏହି ପ୍ରକ୍ରିୟାଟି ଅଧିକରୁ ଅଧିକ ଚାଲୁ । ମୂଳତଃ ସେହି କାରଣରୁ ହିଁ ଚିରଭାଇ ଆଉ ଅପରିହାର୍ଯ୍ୟ ହୋଇ ରହିବା ଉଚିତ ନୁହେଁ । ଶ୍ରମଶିବିର ଗୁଡିକ ଏବେ ଏହିଭଳି ଚାଲୁଛି ।......

## ଜିତେନ୍ଦ୍ର

**ଭୁବନେଶ୍ୱର, ୨୨ ।୮ ।୯୬**

ତୁମର ଚିଠି ପାଇଲି । ମୁଁ ଲେଖିଥିବା କେତୋଟି ଗଳ୍ପ ତୁମକୁ ଭଲ ଲାଗିଲା ବୋଲି ଏତେ ଖୁସି ହୋଇ ତୁମେ ଚିଠି ଦେଲ; ତାହା ପ୍ରକୃତରେ ଖୁବ୍ ଆନନ୍ଦର ବିଷୟ ।

ସେହି ଗପଗୁଡିକ ମୁଁ ବହୁ ବର୍ଷତଳେ ପାଠ ପଢିଲାବେଳେ ଲେଖିଥିଲି । କିଏ କହିପାରିବ ହୁଏତ ତୁମେ ମଧ ଟିକିଏ ବଡ଼ ହୋଇ ଗପ ଓ ଆହୁରି କେତେ କ'ଣ ଲେଖିବ । ଅନ୍ୟ ଜଣକର ଲେଖା ପଢ଼ିଲେ କେତେ ଖୁସି ମିଳେ । ନିଜେ କିଛି ଲେଖିପାରିଲେ ତାହାର କେତେ ନା କେତେ ଗୁଣ ଅଧିକ ଖୁସି ମିଳେ ।

ଏଥର ତୁମ ନିଜ ବିଷୟରେ, ଘର ବିଷୟରେ ଓ ନିଜର ପାଠ ପଢ଼ା ବିଷୟରେ କିଛି ଲେଖିବ । ତାହାହେଲେ ତୁମକୁ ଅଧିକ ଚିହ୍ନିପାରିଲା ଭଳି ଲାଗିବ ।

## ଜ୍ୟୋତ୍ସ୍ନାମୟୀ ମିଶ୍ର

**ଭୁବନେଶ୍ୱର, ୫ ।୯ ।୮୯**

........ପୂର୍ଣାଙ୍ଗ ଶବ୍ଦର ଏପରି ଅର୍ଥ କରାଯିବା ଉଚିତ୍ ନୁହେଁ ଯେପରିକି ଜଣେ ମଣିଷ ଏକ ନିର୍ଦ୍ଦିଷ୍ଟ ଗାରକୁ ଆସି ଘୋଷଣା କରିପାରିବ ଯେ, ଏଥର ମୁଁ ପୂର୍ଣତା ଲାଭ କଲି ଓ ଏହାପରେ ମୋର ଆଉ କିଛି ହେଲେ ଲାଭ କରିବାର ନାହିଁ । ତଥାକଥିତ ପୂର୍ଣାଙ୍ଗର ମଧ ପୂର୍ଣାଙ୍ଗତର ହେବାର ପରିପୂର୍ଣ ସମ୍ଭାବନା ରହିଛି । ଜଣେ ମଣିଷ ଆପଣାକୁ କେବଳ ଖୋଲି କରି ରଖି ଥିଲେ ହେଲା । ତେଣୁ, ପୂର୍ଣରୁ ପୂର୍ଣତର ହେବାର ଅଧିକାର ପ୍ରତ୍ୟେକ ମଣିଷର ରହିଛି । ଏବଂ, ଯିଏ ସତକୁ ସତ ପୂର୍ଣତର ହେବାକୁ ଜୀବନର ସର୍ବୋତ୍ତମ ଅଭିଳାଷ କରି ରଖିଥିବ, ସିଏ ଅନ୍ୟର ଅପୂର୍ଣତାଗୁଡାକ

ପ୍ରତି ଅଧିକ ସହିଷ୍ଣୁ ହେବ । ଆପଣା ଭିତରେ ରହିଥିବା ଅଭାବଗୁଡିକ ପ୍ରତି ମଧ୍ୟ ତା'ର ସର୍ବଦା ପୂର୍ଣ୍ଣ ସହାନୁଭୂତି ରହିଥିବ । ନୈତିକତା ଓ ଆଧ୍ୟାତ୍ମିକତା ମଧ୍ୟରେ ରହିଥିବା ଏହି ମୂଳଭୂତ ପାର୍ଥକ୍ୟଟିକୁ ମନେ ରଖିଥିଲେ ଆମକୁ ବହୁପ୍ରକାର ହଟହଟାରୁ ରକ୍ଷା ମିଳି ପାରିବ । ତେବେ ଯିଏ ଉଚ୍ଚରେ, ବିଚାରାସନରେ ବସିଛି ବୋଲି ତା'ଠାରୁ ନିମ୍ନରେ ଥିବା ଆଉ ଜଣକ ପ୍ରତି ଅସହିଷ୍ଣୁତା ଦେଖାଉଛି, ତା'ର ଦୟନୀୟ ଅବସ୍ଥାକୁ ତୁମେ ଖୁବ୍ ଭଲଭାବରେ ବିଚାର କରିପାରିବ । ଭାରତବର୍ଷର ସମାଜ ଓ ସମୂହଜୀବନରେ ଉଚ୍ଚମାନେ ପ୍ରାୟ ଯୁଗେ ଯୁଗେ ଅବରମାନଙ୍କ ପ୍ରତି ଅସହିଷ୍ଣୁତା ପ୍ରଦର୍ଶନ କରିଆସିଛନ୍ତି ।

ବ୍ରହ୍ମପୁର ଶିକ୍ଷାକେନ୍ଦ୍ରରେ ଏବେ ଯାହା ଘଟିଲା ବା ଘଟୁଛି, ତାହାହିଁ ପ୍ରମାଣ କରି ଦେଉଛି ଯେ ଆମର ଆହୁରି ଅନେକ ବାଟ ଯିବା ବାକି ରହିଛି । ଆମେ ଅସହିଷ୍ଣୁମାନଙ୍କ ପରି ଆଦୌ ହେବା ନାହିଁ । ଶିକ୍ଷକ ଓ ପରିଚାଳକମାନଙ୍କ ଭିତରୁ ଅନ୍ତତଃ ୪/୫ ଜଣ ସେଭଳି ହୋଇପାରିଲେ ସେଠାରେ ସମ୍ବନ୍ଧ ଓ ପରିବେଶ ଉଭୟ ବଦଳିଯିବ । ଏହି ୪/୫ ଜଣ ସତତ ବାଟ ଚାଲୁଥିବେ, ପୂର୍ଣ୍ଣରୁ ପୂର୍ଣ୍ଣତର ହେଉଥିବେ, ସତତ ଅଧ୍ୟୟନକୁ ଅନୁଭବରେ ପରିଣତ କରିପାରୁଥିବେ ଏବଂ ଅବାଧରେ ଅନୁତ୍ତେଜିତ ଭାବରେ ପରସ୍ପର ମଧ୍ୟରେ ପ୍ରବେଶ କରି ପାରୁଥିବେ । ପିଲାମାନେ ତୁମକୁ ଭଲ ଲାଗୁଛନ୍ତି, ତୁମକୁ ପ୍ରେରଣା ଦେଉଛନ୍ତି, ତୁମର ଆଉ ଭାବନା କରିବାର କ'ଣ ଅଛି ? ସେମାନଙ୍କୁ ଆଶ୍ରୟସ୍ଥଳ ହିସାବରେ ନ ଭାବି ନିଜର ସାଥୀ ପରି ଗ୍ରହଣ କର, ସେମାନଙ୍କ ସହିତ ବାଟ ଚାଲ । ତେବେ ସଂସାରର ଅନେକ କାମରେ ଲାଗିପାରିବ ।........

**ଭୁବନେଶ୍ୱର, ୨୪ ।୧୧ ।୮୯**

......ଚିତ୍ତଭାଇଙ୍କୁ ସମେତ, ବଡ଼ସାନ ସମସ୍ତେ ମିଶି ଏପରି ପ୍ରଶଂସା କରିବାକୁ ଆରମ୍ଭ କଲେଣି, ଦିନେ ହୁଏତ ଭାରି ଦୁଃଖପାଇବାକୁ ହେବ ତୁମମାନଙ୍କୁ । ଏତେ ଗୁଡାଏ ପ୍ରଶଂସା ପାଇବା ମଣିଷ ଭିତରେ ମଧ୍ୟ ଅନେକ ରାସ୍ତା ବାକି ଥାଏ, ଅନେକ ଖିଅ ତଥାପି ଯୋଡ଼ା ହୋଇନଥାଏ । ପରିଚୟ ଅଭିବୃଦ୍ଧି ଲାଭ କରେ ଓ ସଂପୃକ୍ତ ସମସ୍ତଙ୍କୁ ସମ୍ପଦବାନ୍ କରେ, ଯେତେବେଳେ ତଦ୍ଦ୍ୱାରା ପରସ୍ପରକୁ ସାହାଯ୍ୟ କରିହୁଏ । ନେବାକୁ ହୁଏ, ଦେବାକୁ ହୁଏ । ଏହାକୁ ମୁଁ ଆଧ୍ୟାତ୍ମିକ ସମକକ୍ଷତା ବୋଲି କହିଥାଏ । ଉପରେ ସିନା ମଣିଷ ମଣିଷ ଭିତରେ ଏତେ ଫରକ୍ । ଫରକ ଅଛି ବୋଲି ଭକ୍ତି,

ସମ୍ମାନ ଆଉ କେତେକେତେ କଥା । ମାତ୍ର ଭିତରେ ଯେଉଁ ଅସଲଟି ରହିଛି, ଯେଉଁଟିକୁ ଛୁଇଁ ହେଉଛି ବୋଲି ଏତେ ଭଲ ଲାଗୁଛି, - ସେଇଟିତ ସେଇ ଗୋଟିଏ ପଦାର୍ଥ । ତେଣୁ ସମକକ୍ଷତା ବ୍ୟତୀତ ଆଉ କିଛି ନାହିଁ। ଏହି ସମକକ୍ଷତା ହେଉଛି ଅସଲ ସ୍ୱୀକୃତି । କେଉଁଦିନ କ'ଣ ଗୋଟାଏ ଅଭାବ ଦେଖିବ ତୁମ ଘରେ ଯାଇ ହିରୋ ହୋଇ ଆସିଥିବା ବିଚରାଟି ଭିତରେ । ତା'ପରେ ମୋହଭଙ୍ଗ ହେବ ନାହିଁ ତ? ସଂସାରରେ ଅଧିକ କ୍ଷେତ୍ରରେ ତାହାହିଁ ହୁଏ । ମୁଁ ଜୀବନରେ କେବେ କାହାକୁ ଫୋପାଡି ଦେବି ନାହିଁ ବୋଲି ବହୁ ଦିନରୁ ଶପଥ କରି ବାହାରିଛି ।...........

**ଭୁବନେଶ୍ୱର, ୧୨ ।୧୨ ।୮୯**

.........ଆମର ଶାନ୍ତି ଓ ଅଶାନ୍ତି, ସହଜ ଓ ଅସହଜ, ସହାୟକ ଓ ପ୍ରତିବନ୍ଧକ - ଏହି ଦୁଇଟିଯାକ ନିଜ ଜୀବନରୂପୀ ବୃତ୍ତଟି ଭିତରେ ପରସ୍ପରର ଅନୁପୂରକ ରୂପେ ଦେଖିବାକୁ ପାଇଲେ ଆମେ କେତେ ଦ୍ୱନ୍ଦ୍ୱରୁ ନିସ୍ତାର ପାଇଯାଆନ୍ତେ । ସମର୍ପଣ ଯଦି ଜୀବନର ସର୍ବନିୟାମକ ଧର୍ମ ହୁଏ, ନିଜର ଅଶାନ୍ତି ବାଧା ଇତ୍ୟାଦି ଇତ୍ୟାଦି ବିଷୟରେ ଏତେ ମନୋଯୋଗ ସହକାରେ ଚିନ୍ତା କରିବାକୁ ଆଉ ସମୟ କୁଆଡୁ ମିଳିବ ? ପରିସ୍ଥିତିରେ ପ୍ରତିକୂଳତା ସବୁବେଳେ ଥାଏ, ସବୁବେଳେ ରହିବ, - ତଥାପି ଅନୁକୂଳତା କ'ଣ କମ୍ ରହିଛି ? ସେହି ଅନୁକୂଳତାଗୁଡିକ ହିଁ ଆମର ପୁଞ୍ଜି ହେଉ ।

ଭଲ ଲାଗିବା, ସମୟ ଭଲଭାବରେ କଟିବା, ଆନନ୍ଦଲାଭ କରିବା, ସମୟ କେମିତି କଟୁ ବୋଲି ଆମେ ଇଛା କରିଥିଲୁ, ଠିକ୍ ସେହିପରି ଜୀବନ କଟିବାର ସମୟଟିଏ ଆସି ପହଞ୍ଚିଯିବା, - ଏସବୁ ଆମ ଜୀବନରେ ଏତେ ସ୍ୱାଭାବିକ ଓ ଅଜାଣତ ହୋଇ ରହିପାରିବା ଉଚିତ ଯେ, ଆମେ ସେ ବିଷୟରେ ଆଦୌ ସଚେତନ ବି ହେଉ ନଥିବା । ଜୀବନରେ ଭଲ ଓ ସୁଖମୟ ସମୟଗୁଡିକୁ ଖାତାରେ ଗାର ପକାଇବାର ଦୁର୍ଭାଗ୍ୟ ଆମର କେବେହେଲେ ନ ହେଉ । ନିଜ ଭିତରୁ ଅସଲ ପରିଚୟ ପାଇଲେ ଯେଉଁ ଶ୍ରଦ୍ଧା ଉପଲବ୍ଧ ହୁଏ, ତାହାହିଁ ଆମକୁ ଏସବୁ ପ୍ରମାଦରୁ ଅତିକ୍ରମ କରାଇ ନିଏ ।

ଶ୍ରମଶିବିର ଗୁଡିକ ଆରମ୍ଭ ହେବାର ପାଞ୍ଚବର୍ଷ ହୋଇଗଲା । ଆମେ ସମସ୍ତେ ଯଥା ସମ୍ଭବ ଅଧିକ ମୁକ୍ତ ଭାବରେ କୋଉଠି ଏକତ୍ର ହେବା, ମୂଳତଃ ଏହି ମତଲବରେ ମୁଁ ପ୍ରଥମ ଶିବିର ଲାଗି ପ୍ରସ୍ତାବ ଦେଇଥିଲି । ଶିବିରକୁ ଯେଉଁମାନେ ଆସୁଛନ୍ତି, ବର୍ତ୍ତମାନ ସେହିମାନେ ହିଁ ଶିବିରର ଯାବତୀୟ ଧାରାର ନିରୂପଣ କରିବେ । ସମସ୍ତେ

ମିଶିକରି କରିବେ । ଉଗ୍ରହୋଇ କାହାଉପରେ କିଛି ଲଦିଦେବେ ନାହିଁ କିମ୍ବା ଆମ କଥା ରହିଲା ନାହିଁ ବୋଲି ଅଭିମାନ କରି ପଛରେ ରହିଯିବେ ନାହିଁ ।.........

**ଭୁବନେଶ୍ୱର, ୯ ।୦୪ ।୯୦**

.........ଏଥର ମୁଁ ମେଘପାଳରେ ପୂରା ପାଞ୍ଚଦିନ ରହିଲି । ନିରୁପମା, ଅନୁପମା ଯାଇଥିଲେ । ଦିନକୁ ପ୍ରାୟ ଚରିଘଣ୍ଟା ପିଲାଙ୍କୁ ପଢ଼ାଇଲି । ସକାଳେ ତିନିଘଣ୍ଟା ଆମେ ସମସ୍ତେ ମିଶି ଜଙ୍ଗଲରୁ ପଥର ସଂଗ୍ରହ କଲୁ କୂଅ ବନ୍ଧା ହେବା ପାଇଁ । ତାହାରି ମାଧ୍ୟମରେ କେତେ କ'ଣ ପରିଚୟ ହୋଇଗଲା ସେଠା ମଣିଷମାନଙ୍କ ସହିତ ଓ ସେଠାରେ କ୍ରମ ଦୃଶ୍ୟମାନ ହୋଇଆସୁଥିବା ପ୍ରତିଶ୍ରୁତି ଗୁଡିକ ସହିତ । ମଣିଷ ପ୍ରସ୍ତୁତ ହୋଇପାରିଲେ ଏହି କିଛି ନାହିଁ ଭିତରେ ମଧ୍ୟ ସବୁଅଛିର ନିର୍ଭର ଗୁଡିକ ଦେଖାଯାଏ ।

ଆମେ ପରସ୍ପରର ଆଲୁଅ ପାଖଗୁଡିକୁ ଦେଖିବା । ତଥାକଥିତ ଅନ୍ଧାର ପାଖଗୁଡିକ ଦେଖିବାକୁ ତ ଆମ ପ୍ରତ୍ୟେକଙ୍କ ଭିତରେ ପରମବନ୍ଧୁ ରୂପେ ଭଗବାନ୍ ରହିଛନ୍ତି । ଯାହା ମୂଳତଃ ତାଙ୍କର କାମ, ତାକୁ ନିଜ ଦାୟିତ୍ୱ ଭିତରେ ଆଣି ପୂରାଇବା ମଧ୍ୟ ଏକ ଅହଙ୍କାର । ଅଗ୍ରଗତି କରିବାର ଗୋଟିଏ ବାଟ ମୁଁ ଏପର୍ଯ୍ୟନ୍ତ ଆବିଷ୍କାର କରିପାରିଛି । ତାହା ହେଉଛି ପରସ୍ପର ଭିତରେ ଥିବା ଆଲୋକଟିକୁ ଦେଖିବା ଏବଂ ନିଜ ଭିତରେ ରହିଥିବା ଆଲୋକଟି ଅନୁସାରେ ଏକ ଜୀବନ ବଞ୍ଚିବାକୁ ଚେଷ୍ଟା କରିବା । ଏତିକି ହୋଇପାରିଲେ ଆଉ ସବୁକିଛି ସତେଅବା ଅତ୍ୟନ୍ତ ସହଜ ହୋଇଥାଏ ।.........

## ଟି. ଶ୍ରୀନିବାସ

**ଭୁବନେଶ୍ୱର, ତା୧୯ ।୨ ।୯୨**

.........ତୁମର ସ୍କୁଲ ଖୋଲିବା ପରେ ପାଠ ପଢ଼ା ମଧ୍ୟ ଆରମ୍ଭ ହୋଇଯିବ । ତୁମେ ସମସ୍ତେ ଖୁସି ହୋଇ ପାଠ ପଢ଼ିବ । ଅର୍ଥାତ୍ ପାଠ ଯେପରି ଆଦୌ ଗୋଟାଏ ବୋଝପରି ଲାଗିବ ନାହିଁ । ମନ ଖୁସିରେ ପାଠ ପଢ଼ିଲେ କଷ୍ଟ ଓ ଅତିକଷ୍ଟ ପାଠ ମଧ୍ୟ ଖୁବ୍ ସହଜ ଲାଗିବ । ବୁଝିପାରୁ ନଥିବା ପାଠକୁ ଅପାଭାଇମାନଙ୍କୁ ଆଉଥରେ ପଚାରି ବୁଝି ନେଉଥିବ ।

ଏଥର ଆମର ପ୍ରତ୍ୟେକ ଚିଠିରେ ଆମେ ତୁମର ପାଠ ବିଷୟରେ ମଧ୍ୟ କିଛି କିଛି ଆଲୋଚନା କରିବା । ଏଥର ଚିଠିରେ ତୁମର କେତୋଟି ଶବ୍ଦର ବନାନ ଭୁଲଭାବରେ ଲେଖା ଯାଇଥିଲା । ମୁଁ ସେଗୁଡ଼ିକୁ ସଂଶୋଧନ କରି ଲେଖି ଦେଉଛି, ଏଥିରେ ତୁମକୁ ଖରାପ ଲାଗିବ ନାହିଁ ତ ? ମୋତେ ନିର୍ଭୟ ହୋଇ ଲେଖିବ ।

ପୁଜନୀୟ- ପୂଜନୀୟ । ଚୀର ନୁହେଁ - ଚିର ।

ହୋଇଜିବ ନୁହେଁ - ହୋଇଯିବ । ଭୁଗୋଳ ନୁହେଁ - ଭୂଗୋଳ ।

ହଁ ପ୍ରତ୍ୟେକ ଚିଠିରେ ମୁଁ କିଛି ଅନୁବାଦ କରିବାକୁ ପଠାଇବି । ଇଂରାଜୀରୁ ଓଡ଼ିଆକୁ ଏବଂ ଓଡ଼ିଆରୁ ଇଂରାଜୀକୁ । ତୁମେ ଏକ ଅଲଗା ଖାତାରେ ସେଗୁଡ଼ିକ କରି ରଖୁଥିବ । ମୁଁ କେବେ ଗଲେ ସଂଶୋଧନ କରିଦେବି । ତୁମେ ଏଥିରେ ରାଜିତ ? ଅର୍ଥାତ୍ ଏହି ଅଧିକା କାର୍ଯ୍ୟଟି ପାଇଁ ତୁମର ସମୟ ହେବ ତ ? ଏହି ଚିଠିରେ ମଧ୍ୟ କେତୋଟି ଅନୁବାଦ ଲେଖି ପଠାଉଛି । ତୁମ ଶ୍ରେଣୀରେ ଅନ୍ୟକେହି ଯଦି ଅନୁବାଦ ଗୁଡ଼ିକୁ କରିବାକୁ ଇଛା କରିବେ, ତେବେ ସେମାନେ ମଧ୍ୟ ତୁମଠାରୁ ଲେଖି ନେଇ ପାରିବେ । ମାତ୍ର ତୁମେମାନେ ଏଗୁଡ଼ିକୁ ଅଲଗା ଅଲଗା କରିବ । ପରସ୍ପର ମଧ୍ୟରେ ଆଲୋଚନା କରି ଏକାଠି ବସି କରିବ ନାହିଁ । ଏବଂ ବାଧ୍ୟ ହୋଇ ନୁହେଁ, ଖୁସି ହୋଇ କରିବ ।.......

ଇଂରାଜୀକୁ ଓଡ଼ିଆକୁ : What is you Father ? I have two brothers and three sisters. He is much younger than me. I am two years older than my sister. My village is on the other side of the river. To-day I was late in reaching the school. He writes to me regularly. It is raining heavily. Please give my regards to your parents. Two and three make five. I like you very much. I have many toys at home.

ଓଡ଼ିଆରୁ ଇଂରାଜୀକୁ - ତୁମେ କେଉଁଠାକୁ ଯାଉଛ ? ଆମ ଗାଆଁରେ ଜଣେ ଭଲ ଡାକ୍ତର ଅଛନ୍ତି । ମନ ଦେଇ ପାଠ ପଢ଼ିବା ଉଚିତ । ମୁଁ ଆସନ୍ତା ବର୍ଷକୁ ବୋର୍ଡ଼ ପରୀକ୍ଷା ଦେବି । ବାପା ଘରେ ନାହାନ୍ତି । କାଲି ଆମଘରକୁ ଅନେକ ଅତିଥି ଆସିବେ । ସେ ବହିଟିକୁ ହଜାଇ ଦେଇଛନ୍ତି । ଆଜି ଆମ ଶ୍ରେଣୀ ମ୍ୟାଚ୍‌ରେ ଜିତିଲା । ତୁମେ ପ୍ରତିଦିନ ଖବରକାଗଜ ପଢ କି ? ମାଆ କାଲି ମାମୁଁ ଘରୁ ଫେରିଲେ । ନଦୀକୂଳରେ ଗୋଟିଏ ଶିବ ମନ୍ଦିର ଅଛି । ଆପଣ କାହାକୁ ଖୋଜୁଛନ୍ତି ? ମୋତେ ତେଲେଗୁ ଭାଷା ଲେଖି ଆସେ ନାହିଁ ।

**ଭୁବନେଶ୍ୱର, ୫ ।୧୧ ।୯୫**

Pretestରେ ତୁମେ ରଖିଥିବା ନମ୍ବର, କେବଳ ମୋଟ ନମ୍ବର ମୋ ପାଖକୁ ଆସିଛି । ଏତେ କମ୍ ନମ୍ବର ରହିଛି ବୋଲି ଆଦୌ ମନଦୁଃଖ କରିବ ନାହିଁ । Pretestରେ ବିଭିନ୍ନ ବିଷୟରେ ଆଣିଥିବା ନମ୍ବର ଅନୁସାରେ ଟେଷ୍ଟ ପାଇଁ ପ୍ରସ୍ତୁତ ହେବ ଓ ଟେଷ୍ଟରେ ଯେପରି ନମ୍ବର ରଖିବ, ସେଥିଲାଗି ବୋର୍ଡ ପରୀକ୍ଷା ପାଇଁ ପ୍ରସ୍ତୁତ ହେବ । ସେହି ପରୀକ୍ଷାବେଳକୁ ନିଶ୍ଚୟ ଅନେକ ଓ ଅଧିକ ଭଲ ହେବ ।........

**ଭୁବନେଶ୍ୱର, ୪ ।୭ ।୯୬**

ତୁମର ପରୀକ୍ଷାଫଳ ଜାଣିବାକୁ ପାଇଲି । ଅଭିନନ୍ଦନ ଜଣାଇ ପଠାଉଛି । ନିଜ ଉପରେ ବିରକ୍ତ ହୁଅନ୍ତି ନାହିଁ । ନିଜର ଶକ୍ତି ଉପରେ ବିଶ୍ୱାସ ରଖିଥାନ୍ତି । ତୁମ ଦଳର ପ୍ରତ୍ୟେକଙ୍କୁ ସେହି ଗୋଟିଏ କଥା କୁହାଯାଇପାରିବ ।

ଆଗକୁ ଆଗକୁ ତୁମେ କେତେ ପରୀକ୍ଷାର ସମ୍ମୁଖୀନ ହେବ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ନିଜର ବିଚାର ଶକ୍ତି ମଧ୍ୟ ବଢ଼ିବ । ତେଣୁ, ତୁମର ଉତ୍ତରୋତ୍ତର ଅଗ୍ରଗତି ଦେଖି ତୁମକୁ ଜାଣିଥିବା ଆମେ ସମସ୍ତେ ଖାଲି ଖୁସି ହେଉଥିବୁ ।......

**ଭୁବନେଶ୍ୱର, ତା ୧୯ ।୯ ।୯୬**

ତୁମର ଦୁଇଟି ଯାକ ଚିଠି ପାଇଛି । ଯାହା ହେଉ, କଲେଜରେ ତୁମର ନାମଲେଖା ହୋଇଗଲା । ଅତ୍ୟନ୍ତ ଖୁସିର କଥା । ଏଥର ପାଠର ବିସ୍ତାର ଆହୁରି ବଢ଼ିଯିବ । ନିଜର ମନରେ ମଧ୍ୟ ଅଧିକ ପରିପକ୍ୱତା ଆସିଯିବ । ତେଣୁ, ପାଠ ପଢ଼ାରୁ ତୁମେ ଅଧିକ ଆନନ୍ଦ ପାଇବ ।

କଲେଜରେ ସବୁକିଛି ଇଂରାଜୀ ମାଧ୍ୟମରେ ପଢ଼ାଯାଏ । ହାଇସ୍କୁଲରେ ଯେତିକି ଇଂରାଜୀରେ ଶିକ୍ଷା ହୋଇଥାଏ, ତାହା ସେଥିପାଇଁ ଆଦୌ କିଛି ନୁହେଁ । ତେଣୁ +୨ର ପ୍ରଥମ ବର୍ଷଟା ତୁମେ ଇଂରାଜୀ ପାଇଁ ଯଥା ସମ୍ଭବ ଅଧିକ ସମୟ ଦେବାକୁ ଚେଷ୍ଟା କରିବ । ଇଂରାଜୀ ଟାଣ ହୋଇଗଲେ କଲେଜରେ କୌଣସି ପାଠ ଆଉ ଆଦୌ ଅସାଧ୍ୟ ଲାଗିବ ନାହିଁ ।.....

**ଭୁବନେଶ୍ୱର, ୧୬ ।୧୧ ।୯୬**

........ଯିଏ ପର୍ବତ ଆରୋହଣ କରିବ, ସିଏ ସର୍ବଦା ପର୍ବତର ଶିଖରକୁ ହିଁ ଅନାଇବ । ସର୍ବଦା କିଛି ଉନ୍ନତି କରିବାକୁ ହେଲେ ସମ୍ମୁଖରେ ଥିବା ସେହିପରି ଗୋଟିଏ ପର୍ବତ

ଉପରେ ଆଖି ରଖିବାକୁ ପଡେ । ତେବେ ନିଜ ଭିତରୁ ହିଁ ବଳ ଓ ଶକ୍ତି ମିଳେ । ପର୍ବତର ଶିଖର ଯାଏ ଯାଇ ପାରିବି କି ନାହିଁ ବୋଲି ଯେଉଁ ବ୍ୟକ୍ତି ପର୍ବତର ପାଦ ଦେଶରେ ଛିଡା ହୋଇ ଭାବୁଥାଏ ଓ ନିଜକୁ ଛୋଟ ଏବଂ ଅସମର୍ଥ ମନେ କରୁଥାଏ ସିଏ ସେହି ପାଦଦେଶରେ ହିଁ ରହିଯାଏ ।....

**ଭୁବନେଶ୍ୱର, ୯ ।୧ ।୯୭**

.........ଆମର ଖୁସିର ଗଭୀରତା ଆଦୌ ଏତେ କମ୍ ହେବା ଉଚିତ୍ ନୁହେଁ ଯେ ଟିକିଏ ବାହାରୁ କାହାର କଡ଼ା କଥାର ଆଘାତ ପାଇଲେ ତାହା ପୂରା ଦୋହଲି ଯିବ । ନିଜେ ବହୁ କଠିନତାର ସମ୍ମୁଖୀନ ହେଲେ ଯାଇ ଆମେ ସଂସାରର ପ୍ରକୃତ କୌଣସି କାମରେ ଲାଗିପାରିବା । ନଚେତ୍ ଗେହ୍ଲାହୋଇ ରହିଯିବା । ଏବଂ ତା'ଫଳରେ ନିଜର ବାଟ ଚାଲିବାରେ ନିଜେ ବାଧା ହୋଇ ଛିଡା ହୋଇଥିବା । ତୁମ ଖୁସି ଆଦୌ ସେପରି ନ ହେଉ ।.........

**ଭୁବନେଶ୍ୱର, ୩ ।୮ ।୯୭**

..........ଏ ବର୍ଷ Council ପରୀକ୍ଷା । ତେଣୁ ମୂଳରୁ ସେହି ଅନୁସାରେ ପଢ଼ାର ଯୋଜନା ହୋଇଯିବା ଉଚିତ୍ । ଅସୁସ୍ଥ ହେଲେ ଆଦୌ ଚଳିବ ନାହିଁ । ତୁମର ଏହି ବୟସରେ ସ୍ଥିର, ସଚେତନ ଓ ଖୁସି ହୋଇ ଜୀବନକୁ ବଞ୍ଚି ଜାଣିଲେ ଅସୁସ୍ଥତା ତୁମ ପାଖକୁ ଆସିବା ଲାଗି ଭୟ କରିବ ।..........

**ଭୁବନେଶ୍ୱର, ୬ ।୧୧ ।୯୮**

ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଲ ନାହିଁ ବୋଲି ଦୁଃଖ କରିବ ନାହିଁ । ନିଜକୁ କଦାପି ଅଯୋଗ୍ୟ ବୋଲି ଭାବିବ ନାହିଁ । ନିଜକୁ ସବୁ ପରିସ୍ଥିତିରେ ବନ୍ଧୁଟିଏ ପରି ଦେଖୁଥିଲେ ନିଜ ଶକ୍ତିର ପରିଚୟ ଅବଶ୍ୟ ପାଇବ ଓ ସକଳ ପ୍ରତିବନ୍ଧକ ଡେଇଁ ବାହାରି ଯାଇପାରିବ । ତେଣୁ, ଖୁସି ହୋଇ, ସ୍ଥିର ହୋଇ ପୂର୍ଣ୍ଣ ବିଶ୍ୱାସର ସହିତ ଆଗାମୀ ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇଯାଅ ।.........

**ଭୁବନେଶ୍ୱର, ୧୫ ।୪ ।୯୯**

.........ପାଠଚକ୍ର ହେଉଥିବା ସ୍ଥାନକୁ ଗଲେ ଯେ ଯାଇ ପାଠଚକ୍ରରେ ଯୋଗଦେବା ପରି ଲାଗିବ, ସେ କଥା କାହିଁକି ହେବ ? ତେଣୁ ଜୀବନର ସକଳ କର୍ତ୍ତବ୍ୟ କରୁଥିବା

ସମୟରେ ମଧ୍ୟ ଆମେ ଇଚ୍ଛା କଲେ ଭିତରେ ସଂପୂର୍ଣ୍ଣ ନୀରବ ଓ ଶାନ୍ତ ହୋଇ ରହିପାରିବା ଏବଂ ଭଗବାନ ମଧ୍ୟ ଆମ ସହିତ ରହିଥିବେ । ଶ୍ରୀନିବାସ ଏକଥାଟିକୁ ମଧ କରିପାରିବ । ତେଣୁ ମାଆଙ୍କର କଥାକୁ ଗ୍ରହଣ କରିନିଅ । ବାଧ୍ୟହୋଇ ନୁହେଁ, ଖୁସି ହୋଇ ଗ୍ରହଣ କରିନିଅ । ମାଆ ଯେ ତୁମର ଭଲ ଦୃଷ୍ଟିରୁ ତୁମକୁ ଏସବୁ ପରାମର୍ଶ ଦେଉଛନ୍ତି ଏଥିପାଇଁ ତାଙ୍କୁ ମୋର କୃତଜ୍ଞତା ଜଣାଇଦେବ ।

ବୟସ ଅଧିକ ହେବା ସଙ୍ଗେ ସଙ୍ଗେ ଆମର ମନ ଓ ହୃଦୟ ମଧ୍ୟ ଅଧିକ ପରିପକ୍ୱ ହୋଇ ଆସିବ । ସେଇଟି ହେଉଛି ଆମ ଜୀବନର ଏକ ବଡ଼ ଆନନ୍ଦ ।.........

## ଟି.ରବି ପ୍ରସାଦ

### ଭୁବନେଶ୍ୱର, ୨୩।୧୨।୯୫

........ପରୀକ୍ଷାରେ କେଉଁ ବିଷୟରେ କେତେ ନମ୍ବର ଆସିଲା ଲେଖିବ । ଯଦି ନିଜେ ଆବଶ୍ୟକ କରୁଛ, ତେବେ ନ ଆସୁଥିବା ପାଠରେ ତୁମକୁ ସାହାଯ୍ୟ କରିବା ସକାଶେ ଜଣେ ଘରୋଇ ସାର୍ ରହିଲେ ଭଲ ହେବ । ଆଗାମୀ ଗ୍ରୀଷ୍ମ ଛୁଟିରେ ନବମଶ୍ରେଣୀରେ ପଢ଼ା ଯାଇଥିବା ପାଠ ଜ୍ଞାନକୁ ମଜବୁତ କରିନେବ । ତେବେ ଦଶମ ଶ୍ରେଣୀକୁ ପାଠ ଆଣ୍ଠ ଲାଗିବ ନାହିଁ ।

ହିବ୍ରୁ ଭାଷାକୁ ଇହୁଦୀମାନେ କହନ୍ତି । ମୁଁ ୧୯୯୦-୯୧ରେ ଇସ୍ରାଏଲ୍‌କୁ ପାଠ ପଢ଼ାଇ ଯାଇଥିଲି । ତା'ପୂର୍ବରୁ ଆଉ ଥରେ ମଧ୍ୟ ଯାଇଥିଲି । ହିବ୍ରୁ ଏକ ଅତ୍ୟନ୍ତ ପୁରାତନ ଭାଷା । ଏଥିରେ 'ମା ଶେମ୍ ଖ(' କହିଲେ ତାହାର ଅର୍ଥ ହେବ 'ତୁମର ନାମ କ'ଣ ?' 'ତୋଡ଼ା' ମାନେ ଧନ୍ୟବାଦ, 'ଲୋ' ମାନେ ନାହିଁ ଓ 'ବେନ୍' ମାନେ ହଁ । 'ଲାଇଲା ତୋରର' ଅର୍ଥ Good Night .......

### ଭୁବନେଶ୍ୱର, ୨୬।୬।୯୬

........ଦଶମ ଶ୍ରେଣୀରେ ପାଠ ଓ ପରୀକ୍ଷା ସର୍ବଦା ଚାଲିଥିବ । ତୁମେ ବର୍ଷ ଆରମ୍ଭରୁ ହିଁ ପୂର୍ଣ୍ଣ ମନଯୋଗ ଦେଇ କାର୍ଯ୍ୟ ଆରମ୍ଭ କରିଦିଅ । ଫଳ ନିଶ୍ଚୟ ସନ୍ତୋଷଜନକ ହେବ । କେବଳ ମୋର ନୁହେଁ, ଆହୁରି ଅନେକଙ୍କର ଶୁଭକାମନା ତୁମ ପଛରେ ରହିଛି । ଆଗାମୀ ବୋର୍ଡ ପରୀକ୍ଷାକୁ ଆଖି ଆଗରେ ରଖି ନିଜର ପ୍ରସ୍ତୁତି ଆରମ୍ଭ କରିଦିଅ ।........

**ଭୁବନେଶ୍ୱର, ୨୨ ।୮ ।୯୬**

.....ବୋର୍ଡ ପରୀକ୍ଷା ପର୍ଯ୍ୟନ୍ତ ଅଧିକାଂଶ ସେହି ପରୀକ୍ଷା ପାଇଁ ପ୍ରସ୍ତୁତ ହେବାରେ ହିଁ ସବୁଠାରୁ ଅଧିକ ମନ ଦେବ । ପାଠ ଅଧିକ ହେଉଥିବା ସଙ୍ଗେ ସଙ୍ଗେ ସେଗୁଡିକର ଶିକ୍ଷା କରିବାକୁ ତୁମକୁ ମଧ୍ୟ ଅଧିକ ଖୁସି ଲାଗୁଥିବ । ଋଷିମାନେ ତପସ୍ୟାରେ ବସିଗଲା ପରି ତୁମେ ମଧ୍ୟ ନିଜର ତପସ୍ୟାରେ ବସିଯାଅ ।........

**ଭୁବନେଶ୍ୱର, ୩ ।୧୧ ।୯୭**

........ଇଂରାଜୀକୁ ଭୟ କରିବ ନାହିଁ । କଷ୍ଟ ଶବ୍ଦଗୁଡିକର ଅର୍ଥକୁ Dictionary ରୁ ଦେଖିବ ଓ ନିଜର ଗୋଟିଏ ଖାତାରେ ଲେଖି ରଖୁଥିବ । କଲେଜରେ ତ ଅଧ୍ୟାପକମାନେ ଇଂରାଜୀରେ ପଢ଼ାଉଥିବେ, ତାହା ତୁମେ ବୁଝି ପାରୁଛ ତ ? ସମ୍ଭବ ହେଲେ ଶ୍ରେଣୀରେ ପାଠ ପଢ଼ାହେଉଥିବା ସମୟରେ ତୁମେ ମଧ୍ୟ ନୋଟ୍ ଲେଖି ରଖୁଥିବ । ତେବେ ପାଠ ଅଧିକ ସହଜରେ ମନେ ରହିବ ।......

**ଭୁବନେଶ୍ୱର, ୨ ।୪ ।୯୮**

......କଲେଜକୁ ଗଲେ ଶିକ୍ଷାର ପରିସର ଅନେକ ବଢ଼ିଯାଏ । ବୁଝିବାର ଶକ୍ତି ମଧ୍ୟ ବୃଦ୍ଧି ପାଏ । ତୁମେ ନିଜର ପାଠପଢ଼ା ସହିତ କମ୍ପ୍ୟୁଟର ମଧ୍ୟ ଶିକ୍ଷା କରୁଛ ଜାଣି ଖୁବ୍ ଖୁସୀ ହେଲି । ଆମେ ଯେତକି ଅଧିକକୁ ଇଚ୍ଛା କରିବା, ସେଥିଲାଗି ଆବଶ୍ୟକ ଶକ୍ତି ଆମକୁ ଆମ ଭିତରୁ ଅବଶ୍ୟ ମିଳିବ । ତୁମେ ମଧ୍ୟ ସେହି କଥା ଅନୁଭବ କରୁଥିବ ।.......

**ଭୁବନେଶ୍ୱର, ୧୯ ।୪ ।୯୯**

.......ବୟସ ବଢ଼ିବା ସଙ୍ଗେ ସଙ୍ଗେ ନିଜ ଭିତରେ ନିଜର ବିବେକ ବୋଲି ଗୋଟିଏ ସାଙ୍ଗ ରହିଛି ବୋଲି କ୍ରମେ ଦେଖାଯିବ । ବିବେକ ସହିତ ନିଜର ଡୋରି ଲାଗିଥିଲେ, ଆଗକୁ ସର୍ବଦା ବାଟ ଦିଶି ଯାଉଥିବ । ସବୁବେଳେ ଖୁସି ଲାଗୁଥିବ । ନିର୍ଭୟ ଓ ହାଲୁକା ମଧ୍ୟ ଲାଗିବ । ସେଇଥିରୁ ହିଁ ତୁମେ ନିଜ ଭିତରର ବିବେକ ସହିତ ସଂଯୋଗ ରହିଛି ବୋଲି ଜାଣିବାକୁ ସମର୍ଥ ହେବ । ସେଇ ତୁମକୁ କେତେ କେତେ ଭଲ ବହି, ଭଲ ମଣିଷ ଓ ଭଲ ସୁଯୋଗ ପାଖରେ ଆଣି ପହଞ୍ଚାଇ ଦେବ । ତୁମ ଚିଠିରୁ ମନେହେଲା ତୁମେ ମଧ୍ୟ ଧୀରେ ଧୀରେ ନିଜ ଭିତରେ ତାହାରି ଭେଟ ପାଇବାକୁ ଯାଉଛ ।.......

## ଦିବାକର ଲେଙ୍କା

**କଟକ, ୪ ।୧୧ ।୮୩**

.........ତୁମେ ପୂର୍ଣ୍ଣ ଉଦ୍ୟମରେ ସମସ୍ତେ ଖୁସି ମନ ହୋଇ ଯେ ଏକ ସ୍କୁଲକୁ ସୁନ୍ଦର କରି ଗଢ଼ିବାର ଉଦ୍ୟମରେ ଲାଗିଛ, ତାହାହିଁ ସବୁଠାରୁ ବଡ଼ କଥା । ଆମେ ଯେତେ ଭଲ କାମ କଲେ ମଧ୍ୟ ତଥାପି ଆମକୁ ଆହୁରି ଅନେକ ଅଧିକ କରିବାର ଅଛି । ଜଣେ ଶିକ୍ଷକ ଲାଗି ଏହା ହିଁ ସର୍ବୋତ୍ତମ ମନୋଭାବ ।

ଆମେ ନିଜେ ଯଦି ଜଡ଼ତା ଓ ଆଳସ୍ୟ ପାଖରେ ମୁଣ୍ଡ ନୁଆଁଇ ଦେଉଥିବା ତେବେ ପିଲାଙ୍କ ଲାଗି ଉତ୍ସାହର ଉତ୍ସ ହୋଇ ପାରିବା କିପରି ? ତୁମେ ନିଜେ ଚିନ୍ତାକରି ଦେଖିବ । ବିଶେଷତଃ ତୁମେ ସେସବୁ ଭିତରକୁ ମୋଟେ ପଶିବ ନାହିଁ । ଆଗକୁ ଯେତେଯେତେ କାର୍ଯ୍ୟ ରହିଛି, ସେଥିରେ ତୁମକୁ ଅନେକ ଭୂମିକା ଗ୍ରହଣ କରିବାକୁ ପଡିବ । ସେଥିଲାଗି ପୁଣି ପ୍ରସ୍ତୁତ ହେବାକୁ ପଡିବତ ?

Education ବିଷୟରେ କିଛି ବହି ସ୍କୁଲ ଲାଗି କିଣି ନେଇ ପାରିବାକୁ ଚେଷ୍ଟା କରିବ । ପରିଚାଳନା କମିଟିକୁ ଏହାର ଆବଶ୍ୟକତା ସମ୍ବନ୍ଧରେ ବୁଝାଇଦେଇ ପାରିଲେ ଏହା କରିବା ଆଦୌ କଷ୍ଟକର ହେବ ନାହିଁ । ସର୍ବପ୍ରଥମେ ଏହି କେତୋଟି ବହି କିଣିବା ଉଚିତ ହେବ ।

Brubacher : The Philosophy of Education

John Holt : How children learn

Why children fail

Freedom and Beyond

K.K. Mukherjee : Education in Ancient India

Bertrand Russel : On Education

Education and Social Order

J. Krishnamruti : Education and the Significance of Life.

## ଦୁର୍ଗାମାଧବ ଦାଶ

**ଭୁବନେଶ୍ୱର, ୨୧ ।୬ ।୯୪**

.......ଇଂରାଜୀକୁ ଆଗ୍ରହ ଲାଗୁ ନାହିଁ ଅର୍ଥ ଇଂରାଜୀକୁ ଡର ମାଡୁଛି । ଏହି ଡର

ପରିତ୍ୟାଗ କରିବା ଉଚିତ । ବର୍ତ୍ତମାନ ଇଂରାଜୀ ହେଉଛି ଏହି ପୃଥିବୀର ଏକ ନମ୍ବର ଭାଷା । ତେଣୁ, ଅଧିକ ଆଗ୍ରହରେ ଓ ଅଧିକ ଖୁସି ହୋଇ ଇଂରାଜୀ ଶିକ୍ଷା କରିବା ଉଚିତ । ଖୁସି ହୋଇ ଲାଗିପଡ଼, ସବୁ ସମ୍ଭବ ହେବ ।

ତୁମମାନଙ୍କର ନବମ ଶ୍ରେଣୀ ହେଲା । ଅର୍ଥାତ୍ ବୋର୍ଡ ପରୀକ୍ଷାର ପାଠ ଆରମ୍ଭ ହେଲା । ସେଥିଲାଗି ବର୍ତ୍ତମାନ ଦୃଢ଼ ମୂଳଦୁଆ ପଡିବା ଉଚିତ । ମନେ ରଖିବ ।

**ଭୁବନେଶ୍ୱର ୨୯ ।୯ ।୯୪**

......ଇଂରାଜୀକୁ ଭଲ ପାଇବାର ଅର୍ଥ ହେଉଛି ତା' ପ୍ରତି ରହିଥିବା ଭୟକୁ ଛାଡିବା ଓ ତା'ପାଇଁ ଅଧିକ ସମୟ ମଧ୍ୟ ଦେବା । ଯାହାକୁ ମଣିଷ ଭଲପାଏ, ତା'ପାଇଁ ଖୁସିରେ ଅଧିକ ସମୟ ଦିଏ । ଇଂରାଜୀ ଆମଠାରୁ ଦୂରରେ ଥିବା ଗୋଟିଏ ଦେଶର ଭାଷା । ତେଣୁ ତାହାକୁ ଜାଣିବା ଲାଗି ଆମ ଭିତରେ ଅଧିକ ଆକର୍ଷଣ ରହିଥିବା ଉଚିତ । ଦୂର ପର୍ବତ ଆମକୁ ଯେଉଁଭଳି ଆକର୍ଷଣ କରାଏ, ଏକଥା ଠିକ୍ ସେହିପରି ହେବା ଉଚିତ ।

ପ୍ରତିଯୋଗିତା ବେଳେ ବଳିଆବାବୁ ଚିତ୍ର ଆଙ୍କିବାରେ ଅନ୍ୟମନସ୍କ ହୋଇଯାଆନ୍ତି । ପ୍ରତିଯୋଗିତାରେ ଅନ୍ୟମାନେ ମଧ୍ୟ ଚିତ୍ର ଆଙ୍କିବାକୁ ଆସିଥାନ୍ତି । ସେମାନଙ୍କୁ ଦେଖି ବଳିଆବାବୁ ଭୟ କରନ୍ତି କି ? ଏତେ ମଣିଷଙ୍କୁ ହରାଇ କାଳେ ଜିତି ନ ପାରିବେ, ସେହି ଚିନ୍ତାରେ ପଡି ଏକାଗ୍ରତା ହରାଇବସନ୍ତି କି ?...........

**ଭୁବନେଶ୍ୱର, ୩ ।୭ ।୯୫**

.........ଚିଠିରେ ତୁମେ ଡାକ ଟିକେଟ ପଠାଇବା ବିଷୟରେ ଲେଖିଛ । ପାଠରେ ଆଗ୍ରହ ଆସୁନାହିଁ ବୋଲି ଲେଖିଛ । ଓଡ଼ିଆମାନେ ଖାଲି ଓଡ଼ିଆ ଜାଣିଲେ ତ ଚଳନ୍ତା, ଇଂରାଜୀ ଶିଖିବାରେ କ'ଣ ଲୋଡ଼ା ବୋଲି ମଧ୍ୟ ଲେଖିଛ । ଏସବୁ ବୁଢ଼ାମାନଙ୍କର ପ୍ରଶ୍ନ । ସେଠାରେ ଅପା ଓ ଭାଇମାନଙ୍କୁ ପଚାରିଲେ ସେମାନେ ଉତ୍ତର କହି ଦିଅନ୍ତେ ।

ବର୍ତ୍ତମାନ ଦଶମ ବୋର୍ଡ଼ ପରୀକ୍ଷା ପର୍ଯ୍ୟନ୍ତ ନିଜର ସମସ୍ତ ଆଗ୍ରହକୁ ତୁମେ ସେହି ପରୀକ୍ଷା ନିମନ୍ତେ ପ୍ରସ୍ତୁତ ହେବାରେ ଦେବ । ପୃଥିବୀ ପାରଳାଖେମୁଣ୍ଡି ଠାରୁ ବହୁତ ବଡ଼ । ନିଜର ବିଦ୍ୟା, ନିଜର ଆଗ୍ରହ ଓ ନିଜର ହୃଦୟକୁ ଠିକ୍ ସେହିଭଳି ବଡ଼ କରିପାରିଲେ ତୁମେ ପାରଳାଖେମୁଣ୍ଡିରେ ଥାଇ ମଧ୍ୟ ବଡ଼ ପୃଥିବୀକୁ ଜାଣି ପାରିବ ।

ବର୍ତ୍ତମାନ ସବୁ ଆଗ୍ରହ ପାଠ ପାଇଁ ରହୁ । ଟିକେଟ ସଂଗ୍ରହ ପାଇଁ ଏହା ପରେ ଯଥେଷ୍ଟ ସମୟ ମିଳିବ ।......

**ଭୁବନେଶ୍ୱର, ୨ ।୧୧ ।୯୫**

........Pretestରେ ତୁମମାନେ ରଖିଥିବା ନମ୍ବର ମଧ୍ୟ ମୋ ପାଖରେ ଆସି ପହଞ୍ଚିଛି । Pretest ଅପେକ୍ଷା ଟେଷ୍ଟରେ ନିଶ୍ଚୟ ଅଧିକ ନମ୍ବର ଆସିବ । ଏବଂ ବୋର୍ଡ଼ ପରୀକ୍ଷାରେ ଟେଷ୍ଟ ଠାରୁ ଆହୁରି ଅଧିକ ଭଲ ଫଳ ହେବ । ତେଣୁ, ନିଜର ମନ ଭିତରେ ମୋଟେ ଦୁଃଖ କରିବ ନାହିଁ । ଖୁସି ହୋଇ ଉଦ୍ୟମ କରୁଥିବ । ପାଠ କଷ୍ଟ ଲାଗିଲେ ଅପା ଭାଇମାନଙ୍କ ଠାରୁ ବୁଝି ନେଉଥିବ । ନିଜକୁ ଆଉ କାହା ସହିତ ତୁଳନା ବି କରିବ ନାହିଁ । ତଦ୍ୱାରା ନିଜର ମନଟା ସବୁବେଳେ ଦବି ଦବି ଯାଉଥିବ ଓ ତୁମେ ପଛରେ ପଡି ଯାଉଥିବ ।........

**ଭୁବନେଶ୍ୱର, ୧୩ ।୬ ।୯୬**

..........ଆଗରୁ ଲେଖାଟି ମଧ୍ୟ ପାଇଥିଲି । ନାନା ବିଷୟରେ ନିଜର ବିଚାରକୁ ପ୍ରକାଶ କରିବା ନିମନ୍ତେ ତୁମର ଯେ ଆଗ୍ରହ ରହିଛି, ତାହା ଅତ୍ୟନ୍ତ ଆନନ୍ଦର କଥା । ମାତ୍ର ସେଥିପାଇଁ ଭଲଭାବରେ ଏକ ମୂଳଦୁଆ ପଡିବା ଉଚିତ । ନିଜର ବ୍ୟକ୍ତିଗତ ଅନୁଭୂତି ଓ ଅଧ୍ୟୟନ ବ୍ୟାପକ ହେବା ଉଚିତ । ଭାଷା ଉପରେ ମଧ୍ୟ ଅଧିକ ଦଖଲ ଆସିବା ଦରକାର । ତେବେ, ଆଗରେ ଦୀର୍ଘ ଜୀବନଟିଏ ପଡିଛି, ତୁମେ ସେହି ଦିଗରେ ପ୍ରସ୍ତୁତି ଆରମ୍ଭ କରିଦିଅ । କେବେହେଲେ ନିରାଶ ନ ହୋଇ ଉଦ୍ୟମ ଚାଲୁ ରଖିଥାଅ ।.......

**ଭୁବନେଶ୍ୱର, ୧୦ ।୧୦ ।୯୬**

.........ଏହା ଭିତରେ ତୁମେ କଲେଜରେ ଯୋଗ ଦେଇ ସାରିବଣି । ନୂଆ ପାଠ, ନୂଆ ବିଷୟ, ତେଣୁ ନୂଆ ଉତ୍ସାହରେ ଆଗକୁ ମାଡି ଚାଲିଯିବ । ନିଜର ଭୁଲଗୁଡାକ ବିଷୟରେ ଏତେ ବେଶୀ ଚିନ୍ତା କରୁଥିଲେ ନିଜର ଗୁଣଗୁଡ଼ିକ ମଧ୍ୟ ଆବିଷ୍କାର କରିପାରିବ ନାହିଁ । ତେଣୁ, ଖୁସି ହୋଇ ଆଗକୁ ଚାଲିଯାଉଥିବ ।.....

**ଭୁବନେଶ୍ୱର, ୧୧ ।୧୧ ।୯୬**

.......କଲେଜରେ ପ୍ରଥମ ବର୍ଷର ସବାଆଗ କର୍ତ୍ତବ୍ୟ ହେଉଛି ନିଜର ଇଂରାଜୀ ଭାଷା ଜ୍ଞାନରେ ଉନ୍ନତି ସାଧନ କରିବା । ନହେଲେ କ୍ଲାସ୍‌ରେ ପଢ଼ାଯାଉଥିବା ପାଠ କିଛି

ବୁଝି ହେବ ନାହିଁ । ବହିର ପାଠ ମଧ୍ୟ ଅସ୍ପଷ୍ଟ ହୋଇ ରହିଯିବ । ତେଣୁ, ଇଂରାଜୀ ଭାଷାର ମୂଳଦୁଆଟିକୁ ଟାଣ କରିପାରିଲେ ଆଗକୁ ଆଗକୁ ଖୁବ୍ ଭଲ ଫଳ ମିଳିବ । ପାଠ ମଧ୍ୟ ସହଜ ଲାଗିବ । ପ୍ରଥମ ବର୍ଷଟିରେ ଏଥିପାଇଁ ସମୟ ଦେଇ ନ ପାରିଲେ ପରେ ଆଉ ଆଦୌ ସମୟ ମିଳିବ ନାହିଁ । .......

**ଭୁବନେଶ୍ୱର, ୨୪ ।୧ ।୨୦୦୦**

........ନିଜକୁ କଦାପି ଦୁର୍ବଳ ମନେ କରିବ ନାହିଁ । ତେବେ ନିଜକୁ ତୁମେ ଯେତେ ଶକ୍ତି ମାଗିବ, ନିଜ ଭିତରୁ ସେତିକି ଶକ୍ତି ଅବଶ୍ୟ ପାଇବ । ବେଳେବେଳେ ଅସମର୍ଥ ପରି ଲାଗିବ, ତଥାପି ପୁନର୍ବାର ସବୁ ସାମର୍ଥ୍ୟ ଫେରି ପାଇବ । ଆଗରେ ବିସ୍ତୃତ ଜୀବନ ପଡି ରହିଛି । ଆହୁରି କେତେ ନା କେତେ ବାଟ ଯିବାକୁ ହେବ । ତେଣୁ, ଖୁସି ହୋଇ ଆଗକୁ ମାଡିଯିବା ହିଁ ସର୍ବପ୍ରଥମ କଥା । ବାଧା ଆସିବ, ବାଧା କଟିଯାଉଥିବ ।...........

## ନାରାୟଣ ବେହେରା

**ଭୁବନେଶ୍ୱର, ୨୭ ।୬ ।୯୬**

.........ନିଜର ଯୋଗ୍ୟତା ବଢ଼ିବା ସହିତ ଦାୟିତ୍ୱ ମଧ୍ୟ ଅଧିକ ଆସି ପହଞ୍ଚିବ । ଭାଷାଟିକୁ ଭଲଭାବେ ଶିଖିବା ହେଉଛି ସବୁଠାରୁ ବଡ଼ ଯୋଗ୍ୟତା । ତା'ହେଲେ ଆଦିବାସୀମାନେ ତୁମ ସହିତ ଆଉ କୌଣସି ଦୂରତା ରଖିବେ ନାହିଁ । ଏବଂ, ସେହିପରି ହେଲେ ତୁମେ ସେମାନଙ୍କୁ ସାଙ୍ଗରେ ନେଇ ବହୁତ କାମ କରିପାରିବ । ତୁମଠାରେ ସେମାନଙ୍କର ବିଶ୍ୱାସ ଆସିଯିବ ।.......

**ଭୁବନେଶ୍ୱର, ୨୧ ।୧୨ ।୯୬**

.........ତୁମ କଥା ମନେ ପଡିଲେ ମୁଁ ସବାଆଗ ଗୋଟିଏ କଥା ଭାବେ, ଦିନକୁ ଦୁଇଟି ଶବ୍ଦ ଶିଖିବା ଦ୍ୱାରା ତୁମେ ଗତ କେତେ ମାସ ଭିତରେ ୫୦୦ଟି ଶବ୍ଦ ଶିଖିଯାଇ ପାରନ୍ତଣି । ଏବଂ ଅନ୍ତତଃ ଏହି ହିସାବରେ ତୁମେ 'ଅଗ୍ରଗାମୀ'ର ଅନ୍ୟସବୁ ବନ୍ଧୁଙ୍କଠାରୁ ଅଲଗା ହୋଇ ଦିଶିପାରନ୍ତ । ଯେଉଁମାନଙ୍କର କାମ କରିବାକୁ ସେଠାରେ ଅଛ, ସେମାନେ ମଧ୍ୟ କ୍ରମେ ଅଧିକ ବିଶ୍ୱାସର ସହିତ ତୁମକୁ ଗ୍ରହଣ କରି ନେଇପାରନ୍ତେ ।.....

**ଭୁବନେଶ୍ୱର, ୨୭ ।୨ ।୯୭**

..........ଆମେ ଯେତିକି ଯୋଗ୍ୟ ହେଉଥିବା, ସେତିକି ସେତିକି ଫଳପ୍ରଦ ଭାବରେ ଅନ୍ୟମାନଙ୍କର କାମରେ ଲାଗିପାରୁଥିବା । ତେଣୁ ନିଜର ଯୋଗ୍ୟତା ବଢ଼ାଇବା ହିଁ ଆମ ଜୀବନରେ ସର୍ବଦା ସର୍ବପ୍ରଧାନ ଆଭିମୁଖ୍ୟ ହୋଇ ରହିବା ଉଚିତ । ଗୋଟିଏ ବର୍ଷ ଭିତରେ ମୁଁ ନିଜକୁ କେତେ ଅଧିକ ଯୋଗ୍ୟ କଲି, ନିଜ ପାଖରେ ତାହାହିଁ ଅସଲ ପ୍ରଶ୍ନ ହେବା ଉଚିତ୍ ।

ଆଗ ଆଦିବାସୀ ଶବ୍ଦ ଭଣ୍ଡାର ବୃଦ୍ଧିପାଉ । ଯେଉଁ ଶବ୍ଦ ଗୁଡିକ ଅଧିକ ବ୍ୟବହୃତ ହେଉଛି, ସେହିଗୁଡିକ ଆଗ ଶିଖି ହେବ । ମାତ୍ର ଶିକ୍ଷାଟା ମୂଳରୁ ହିଁ କଷ୍ଟ ଲାଗିଲେ ସବୁ ବିଳମ୍ବ ହେବ । ଖୁସୀ ହୋଇ ଶିଖିଲେ ସହଜ ଲାଗିବ ।.....

**ଭୁବନେଶ୍ୱର, ୧୬ ।୪ ।୯୭**

..........ତୁମ କଥା ଭାବିଲେ ମୋର ଦୁଇଟି କଥା ସବାଆଗ ମନେ ପଡେ । ପ୍ରଥମ କଥା, ତୁମେ ସ୍ଥାନୀୟ ଭାଷା ଶିଖିବ । ଯିଏ ସେମାନଙ୍କ ଭାଷାରେ କଥା କହି ନ ପାରୁଛି, ଆଦିବାସୀମାନେ କାହିଁକି ସେମାନଙ୍କୁ ନିଜ ଲୋକପରି ଏତେ ବିଶ୍ୱାସ କରିବେ । ଦ୍ୱିତୀୟ କଥାଟି ହେଲା, ସେଠା ସହକର୍ମୀମାନଙ୍କ ସହିତ ତୁମେ ଏପରି ଆଚରଣ କରିବ, ଯାହାଦ୍ୱାରା କି ସେମାନେ ତୁମକୁ ନିଜର ସମାନ ବୋଲି ଅନୁଭବ କରିବେ । ଆଦିବାସୀ ଅଞ୍ଚଳରୁ ପୂର୍ଣ୍ଣ ସମର୍ଥ ହୋଇ ଯଦି କେତେଜଣ ବାହାରିବେ, ସେହି ଅଞ୍ଚଳର ଉନ୍ନତି ଓ ଅଗ୍ରଗତି ବିଷୟରେ ସ୍ୱପ୍ନ ଦେଖିବେ, ତେବେ ସେଠାରେ କେତେ କ'ଣ ଘଟିବ । ନିଜର ସମ୍ବନ୍ଧ ଦ୍ୱାରା ଆମେ ସେହିପରି ଜଣେ ଦୁଇଜଣଙ୍କୁ ଆମର ସମକକ୍ଷ କରି ତିଆରି କରିବା ।.........

**ଭୁବନେଶ୍ୱର, ୧୩ ।୬ ।୯୭**

........ହଁ ଆଗକୁ ଆଗକୁ ଯାଉଥିବା ସହିତ ଅଭିଜ୍ଞତା ମଧ୍ୟ ବହୁତ ହେଉଥିବ । ତାହାହିଁ ଆମକୁ ଅଧିକ ପାକଳ କରୁଥିବ । ଏବଂ, ଜୀବନରେ ଯାହାକୁ ଆମେ ନିଜର ସର୍ବପ୍ରଧାନ ଲକ୍ଷ୍ୟ ବୋଲି ଗ୍ରହଣ କରିଛୁ, ତାହାରି ଆକର୍ଷଣଟି ଆମ ଲାଗି କ୍ରମେ ସର୍ବପ୍ରଧାନ ହେବାରେ ଲାଗିଥିବ । ଅନ୍ୟ ଆକର୍ଷଣ ଅବଶ୍ୟ ଥିବ, ତଥାପି ପ୍ରଧାନ ଆକର୍ଷଣଟି ଆମକୁ ଆଦୌ ବିଚଳିତ କରି ଦେଉନଥିବ ।........

**ଭୁବନେଶ୍ୱର, ୩୦ ।୯ ।୯୭**

.......ତୁମର 'ଅଗ୍ରଗାମୀ'କୁ ଯିବା କୋଡ଼ିଏ ମାସ ହୋଇଗଲା । ତେବେ ତୁମେ ନିଜକୁ Senior ବୋଲି ଅନୁଭବ ନ କରିବ କାହିଁକି ? ତୁମେ ନିଜେ ବଡ଼ ଭାଇଟିଏ ହୋଇ ଆହୁରି ଅନେକଙ୍କୁ ବାଟ ଚଲିବା ପାଇଁ ଉଦ୍‌ବୋଧନ ଦେବ । ଆବଶ୍ୟକ ଜ୍ଞାନ ମଧ୍ୟ ଯୋଗାଇ ଦେବ । ଯେଉଁଦିନ ସ୍ଥାନୀୟ ଲୋକେ ନିଜ ଆଖିରେ ନିଜ ବର୍ତ୍ତମାନ ଏବଂ ଭବିଷ୍ୟତକୁ ଦେଖିବେ, ସେଦିନ ଯାଇ ଆମର ଗୋଟିଏ ପାହାଚ ସରିଲା ବୋଲି ଆମେ ଜାଣିବା । ନବସୃଜନ ଶିକ୍ଷାର କେନ୍ଦ୍ର ଏକ ବିରାଟ challenge- ତାହାକୁ ତମେ କେବଳ ଉପରୁ ସ୍ଥିରୀକୃତ ହୋଇଥିବା ଏକ କାର୍ଯ୍ୟକ୍ରମ ରୂପେ ନୁହେଁ, ଏକ challengeରୂପେ ହିଁ ଗ୍ରହଣ କରିବ ।.........

**ଭୁବନେଶ୍ୱର, ୩୦ ।୭ ।୨୦୦୦**

......ପ୍ରଗତିବାଦୀରେ ଏଥର ପ୍ରକାଶ ପାଇଥିବା ତୁମର ଲେଖାଟି ଅତ୍ୟନ୍ତ ଭଲ ଲାଗିଲା । ପ୍ରବନ୍ଧରେ ତଥ୍ୟ ଗୁଡିକ ଅପେକ୍ଷା ବିଷୟଟି ପ୍ରତି ନିଜର ମୂଳ ଦୃଷ୍ଟିକୋଣଟି ମହତ୍ତ୍ୱପୂର୍ଣ୍ଣ । ଦୃଷ୍ଟିକୋଣଟି ସ୍ପଷ୍ଟ ଏବଂ ପ୍ରସାରିତ ହୋଇଯାଉଥିବା ସଙ୍ଗେ ସଙ୍ଗେ ଉପଯୁକ୍ତ ଭାଷା ମଧ୍ୟ ମିଳିଯାଉଥିବ । ନିଜର ଅନୁଭବ ଶକ୍ତି, ଘରିପାଖର ମନୁଷ୍ୟମାନଙ୍କୁ ଓ ପୃଥିବୀକୁ ଅଧିକ ସ୍ୱଚ୍ଛ ଭାବରେ ଦେଖିପାରିବାର ସାମର୍ଥ୍ୟ ଏବଂ ଅଧ୍ୟୟନ ସହିତ କ୍ରମେ ସବୁକିଛି ବାଟକୁ ଆସିଥାଏ । କାମ ତ ଆହୁରି ବଢ଼ିବ । ତଥାପି ସମୟ ମିଳିବ । ଏବଂ ଭିତର ବାହାର ଖୁସି ଥିଲେ ସବୁ ସହଜ ହୋଇ ଯାଉଥିବ ।........

**ଭୁବନେଶ୍ୱର, ୧୫ ।୯ ।୨୦୦୦**

.......ତୁମେ କର୍ମକ୍ଷେତ୍ରରେ ରହି ଯାହାକିଛି ଭାବୁଛ ଓ ଅନୁଭବ କରୁଛ, ତାହା ତୁମକୁ ଅଧିକ ଯୋଗ୍ୟ ହେବାରେ ନିଶ୍ଚୟ ସାହାଯ୍ୟ କରିବ । ସମସ୍ୟା ତ ବହୁତ, ମାତ୍ର ଆମେ ସମାଧାନ ଖୋଜିବା ସଙ୍ଗେ ସଙ୍ଗେ ମଣିଷମାନଙ୍କୁ ହିଁ ଅଧିକ ଖୋଜିବା । ତୁମେ ଯେପରି ଭାବୁଛ, ବୁଝୁଛ ଓ ଅନୁଭବ କରୁଛ, ତୁମର ପ୍ରୟାସ ଦ୍ୱାରା ସେଠାରେ ଅଧିକ ମଣିଷ ତୁମରି ପରି ଭାବିବେ, ବୁଝିବେ, ଅନୁଭବ କରିବେ, - ତାହାହିଁ ସବୁଠାରୁ ଅଧିକ ଫଳ ଦେବ । ତୁମକୁ ଆଉ ସେଠା ଲୋକଙ୍କର ଅଭିଭାବକ ପରି ମନେ ହେବ ନାହିଁ । ସେମାନଙ୍କର ସାଙ୍ଗ ଓ ସହଯାତ୍ରୀ ପରି ମନେ ହେବ । ମୁଁ

ଜାଣେ, କୌଣସି ସ୍ୱେଚ୍ଛାସେବୀ ସଂସ୍ଥା ବା ସରକାର ଏହି କାର୍ଯ୍ୟଟି ପାଇଁ ତୁମକୁ ଅଧିକ ପଇସା ଦେବ ନାହିଁ । ତଥାପି ସେହି କାମଟି ହିଁ ଅସଲ କାମ । ଭିତର ଆଡକୁ ଦୁଆରଟିଏ ଫିଟାଇଦେଲେ ତା'ପରେ ଜଣେ ମଣିଷ ନିଜକୁ ହିଁ ନିଜର ପରିତ୍ରାଣକର୍ତ୍ତା ବୋଲି ଜାଣିବ । ଅସହାୟତା ତାହାରି ଦ୍ୱାରା ହିଁ ଦୂରହେବ । ତୁମେ ଦୁହେଁ ଏହି କଥାଟି ଉପରେ ଥିର ହୋଇ ଭାବିବ ।

.......ଲୋକଙ୍କ ସହିତ ମିଶିବା, ସେମାନଙ୍କୁ ତୁମର ଅଧିକ ନିକଟବର୍ତ୍ତୀ ହୋଇ ଆସିବାର ଅଭୟ ଯୋଗାଇଦେବା, ଇଏ ମଧ୍ୟ ଏକ ଅଧ୍ୟୟନର କାମ ଦେଇପାରେ । ମଣିଷନାମକ ପୁସ୍ତକକୁ ଅଧିକ ଅନ୍ତରଙ୍ଗ ଭାବରେ ଅଧ୍ୟୟନ କରିପାରିବାକୁ ଆମକୁ ପୃଥିବୀର ସବୁଯାକ ବହି ସାହାଯ୍ୟ କରନ୍ତୁ - ତାହାରି ଦ୍ୱାରା ହିଁ ଆମ ନିଜର ଓ ପୃଥିବୀର ହିତ ହେବ ।......

## ନିରଞ୍ଜନ ଖୁଣ୍ଟିଆ

**କଟକ ୨୧ ।୫ ।୭୯**

.........ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରଗୁଡିକ କେବଳ ଯେ ସହରରେ ଚାଲିବ, ଆପଣ କଦାପି ଏପରି ମନକୁ ଆଣିବେ ନାହିଁ । ଏହା ମଧ୍ୟରେ ଗ୍ରାମାଞ୍ଚଳରେ ଅନେକ ଶିକ୍ଷାକେନ୍ଦ୍ର ଆରମ୍ଭ ହୋଇଯାଇଛି । ଆମ ଓଡ଼ିଶାରେ ସହର କେତୋଟି ଯେ କେବଳ ସେହି ସହରରେ ହିଁ ଶିକ୍ଷାକେନ୍ଦ୍ରଗୁଡ଼ିକୁ ସୀମାବଦ୍ଧ କରି ରଖାଯିବ । ବରଂ ଗାଆଁରେ ଆରମ୍ଭ ହେଉଥିବା ଶିକ୍ଷାକେନ୍ଦ୍ରଗୁଡିକ ଜରିଆରେ ହିଁ ଏହି ନୂତନ ଶିକ୍ଷା ଆନ୍ଦୋଳନର ଚେର ଭୂମି ଭିତରକୁ ଅଧିକ ଗଭୀରଯାଏ ପ୍ରବେଶ କରିବ ।

....... ଆମେ ଯାହାକିଛି ଆରମ୍ଭ କରିବା, ତାହାକୁ ବାହାର ଉତ୍ସାହରେ କଦାପି ଆରମ୍ଭ କରିବା ନାହିଁ । ବାହାରୁ ଉତ୍ସାହ ନ ପାଇଲେ ସେହି ଉଦ୍ୟମ କଦାପି ଭାଙ୍ଗି ପଡିବ ନାହିଁ । ଆମର ସଂକଳ୍ପ ତେଣୁ ଅନ୍ତରର ସଂକଳ୍ପ ହୋଇ ରହିଥାଉ । ଯାହାକିଛି ବାଧା ପହଞ୍ଚିଲେ ମଧ୍ୟ ତାହା ବିଚଳିତ ହୋଇ ନପଡୁ । ତେଣୁ ଯାହା ଆରମ୍ଭ କରିଛନ୍ତି, ତାହାକୁ ବନ୍ଦ କରିଦେବାର ପ୍ରଶ୍ନ ଉଠୁନାହିଁ । ବାଧା ଅନେକ ଆସିବ । ସ୍କୁଲଟିଏ କଲେ ସ୍ରୋତ ବିରୁଦ୍ଧରେ ଯିବାକୁ ପଡିବ । ତଥାପି ଆମେ ନିଜେ ଭାଙ୍ଗି ପଡିବା ନାହିଁ । ଯାହାଙ୍କ ଇଚ୍ଛା ଏହି ଉଦ୍ୟମ ପଛରେ ରହିଛି, ସେଇ ଆମର ବଳ ଓ ଶ୍ରଦ୍ଧା ହୋଇ ତାହାକୁ ଅଗ୍ରସର କରାଇନେବେ ।

**କଟକ, ୩୧ । ୮ । ୭୯**

.........ପ୍ରଚଳିତ ଶିକ୍ଷାର ପ୍ରତିକୂଳ ତୋଫାନ ଭିତରେ ଯିଏ ନୂଆକରି କିଛି ଗଢ଼ିବ ବା କରିବ, ତାକୁ ପ୍ରାୟ ସୁଅ ବିରୁଦ୍ଧରେ ପହଁରି ଶିଖିବାକୁ ପଡିବ । ତଥାପି, ଆମ ପରସ୍ପର ଭିତରେ ସଦ୍‌ଭାବନା ଓ ସହାନୁଭୂତି ରହିଥିଲେ ଯେତେ ବଡ଼ ବାଧା ଆସିଲେ ମଧ୍ୟ ଆମେ ତାହାକୁ ଲଙ୍ଘିଯାଇପାରିବା । ଯେଉଁ ବୃହତ କରୁଣାର ବଳରେ ଆମମାନଙ୍କ ଦ୍ୱାରା ଏସବୁ କାର୍ଯ୍ୟ ହୋଇପାରୁଛି, ଆମର ଯାବତୀୟ କାର୍ଯ୍ୟ ଭିତରେ ଆମେ ସେହି କରୁଣାର ବଳରେ ଅଧିକରୁ ଅଧିକ ଭାଜନ ହେଉଥିବା ।..........

**କଟକ, ୧୩ । ୯ । ୭୯**

....... ସର୍ବପ୍ରଥମେ ରେଜିଷ୍ଟ୍ରେସନ୍ କଥା । ମୋ ଜାଣିବାରେ କୌଣସି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ପରିଚାଳନା କମିଟି ରେଜିଷ୍ଟର୍ଡ ହୋଇନାହାନ୍ତି । ଅଧିକାଂଶ କ୍ଷେତ୍ରରେ ଅନେକ ଦିନରୁ ସକ୍ରିୟ ହୋଇଆସିଥିବା ପାଠଚକ୍ର ହିଁ ଏକ ପୂର୍ଣ୍ଣାଙ୍ଗ ବିଦ୍ୟାଳୟ ଆରମ୍ଭ କରିବା ଲାଗି ନିଷ୍ପତ୍ତି କରନ୍ତି । ସେହି ପାଠଚକ୍ର ଗୁଡିକ ରେଜିଷ୍ଟାର୍ଡ । ପାଠଚକ୍ର ହେଉଛି ଏକ ସ୍ଥାୟୀ ଜିନିଷ । ପରିଚାଳନା ସମିତିର ସଭ୍ୟମାନେ ତ ସମୟ ଅନୁକ୍ରମରେ ବଦଳି ବି ଯାଉଥିବେ । ଆପଣଙ୍କ ପାଠଚକ୍ର ଯଦି ରେଜିଷ୍ଟାର୍ଡ଼ ହୋଇ ନଥିବ, ତେବେ ତାହାକୁ ରେଜିଷ୍ଟାର୍ଡ କରିନେବା ଉଚିତ ।......

**କଟକ, ୧୨ । ୧୧ । ୭୯**

......ସ୍କୁଲର ସବୁ ସମ୍ବାଦ ଓ ଆପଣମାନଙ୍କର କଳ୍ପନା ଗୁଡିକୁ ଜଣାଇ ପ୍ରପତ୍ତିଙ୍କ ପାଖକୁ ଅନ୍ତତଃ ପନ୍ଦରଦିନରେ ଖଣ୍ଡେ ଚିଠି ଦେବେ । ପାଠଚକ୍ରର Registration ମଧ୍ୟ ଅତିଶୀଘ୍ର ହୋଇଯିବା ଉଚିତ । ତା'ହେଲେ ଆହୁରି ଅନେକ ଆଗକୁ ଆମର ଆଖି ପାଇଯିବ । ଆପଣଙ୍କର ଗାଆଁ ଆଦିବାସୀ ସାହିରେ କେତେକ ଭାଇ ସ୍କୁଲଟିଏ ଲାଗି ଆଗ୍ରହ ପ୍ରକାଶ କରିଛନ୍ତି ଓ ସୁନ୍ଦର ଜାଗାଟିଏ ବି ସେଥିଲାଗି ବାଛିଛନ୍ତି । ଏହାକୁ ଉତ୍ସାହିତ କରାଯିବା ଉଚିତ୍ । ଆପଣ ନିଜଆଡୁ ଉତ୍ସାହ ଦେଇ ଓ ଉଦ୍ୟମ କରି ସେଠି ତୁରନ୍ତ ଏକ ପାଠଚକ୍ର ଆରମ୍ଭ କରିଦିଅନ୍ତୁ । ଜଣେ ଦୁଇଜଣ କେହି କିଛି ସମୟ ସେଠାରେ ପିଲାମାନଙ୍କ ପାଇଁ ଦେବାକୁ ତିଆରି ହୋଇଯାଆନ୍ତୁ । କେତେ ପିଲାଙ୍କୁ ଏକାଠି କରି ଖେଳାନ୍ତୁ, ଗୀତ ଗାଆନ୍ତୁ, ଯୁମର ଧରନ୍ତୁ - କ୍ରମେ ଏକାତ୍ମକତା ହୋଇଯାଉ । କେତେ ପିଲା ସ୍କୁଲକୁ ଆସିବାକୁ ରାଜୀ ହେବେ, ତାହାର ଏକ ତାଲିକା

ପ୍ରସ୍ତୁତ ହେଉ । ବାପାମାଆମାନେ କେଉଁ ବର୍ଣ୍ଣର, ସେମାନଙ୍କ ବ୍ୟବସାୟ କ'ଣ ଓ ସେମାନଙ୍କ ଆୟ ହାରାହାରି କେତେ, ସେମାନେ ସାକ୍ଷର କି ନୁହନ୍ତି, ଏହି ସବୁ ତଥ୍ୟ ସଂଗ୍ରହ କରାଯାଉ । ଇତି ମଧ୍ୟରେ ଆପଣ ପ୍ରପତ୍ତିଙ୍କୁ ବି ଜଣାନ୍ତୁ । ମୁଁ ଏଥର ଚିଠିରେ ତାଙ୍କୁ ସେହି ବିଷୟରେ ଲେଖିବି ।........

କଟକ, ୨ ।୪।୮୦

........ଆମ ମନରେ ଉଚିତ୍ ଶ୍ରଦ୍ଧା ରହିଥିବା ପର୍ଯ୍ୟନ୍ତ ଆମର କାମ ନିଶ୍ଚୟ ହେବ । ବାଧା ଆସିବ, ତଥାପି କାମ ହେବ । ଅଯୋଧ୍ୟା ପୂର୍ଣ୍ଣାଙ୍ଗ ବିଦ୍ୟାଳୟ କ୍ଷେତ୍ରରେ ତାହାହିଁ ହୋଇଛି । ଏଥିରେ ବିଶ୍ୱାସ ବଢ଼ିବ । ମୋଟେ କମିବ ନାହିଁ ।

ଆମେ ଆଇନ ଭାଙ୍ଗିବା ବାଲା ମୋଟେ ନୋହୁ, ଆମେ ନୂଆ ଆଇନ୍‌ରେ ସଂସାରକୁ ଓ ସମାଜକୁ ନୂଆକରି ଗଢ଼ିବାକୁ ଇଚ୍ଛା କରୁଛୁ । ସେଥିଲାଗି ଅନନ୍ତ ବିଶ୍ୱାସ ଧରି ବାହାରିଛୁ । ଆମର ଏହି ଉଦ୍ଦେଶ୍ୟରେ ପୁରୁଣା ଆଇନ ଅନେକ ଭାଙ୍ଗିବ । ପୁରୁଣାମାନେ ଅନେକ ହୁରୁଡିବେ । D.I.ତ ସାନ ଆସନର କଥା । ତେଣୁ ଘାବରେଇଯିବା ମୋଟେ ଉଚିତ୍ ନୁହେଁ । ଆଶ୍ଚର୍ଯ୍ୟ ହେବା ମୋଟେ ଉଚିତ୍ ନୁହେଁ । ଯିଏ କଲିକତାକୁ ଟିକେଟ କାଟିଛି, ସିଏ ଶେରଗଡ଼ ପାଖରେ D.I.ଙ୍କ କଥା ଶୁଣି ଅଟକିଯିବ କାହିଁକି ? ତେଣୁ, ଆମେ ନୀରବ ହୋଇ ଧୈର୍ଯ୍ୟରଖି ଆମକୁ ଯେଉଁଠାକୁ ଯିବାକୁ ହେବ, ସେଠାକୁ ନିଶ୍ଚୟ ଯିବା ।

ତେଣୁ ଆମ ସହିବାର ସୀମା ଅନନ୍ତ । ଏହି ସହିବା ପଛରେ ଅନନ୍ତ ବିଶ୍ୱାସ ରହିଛି । ଆମେ କାମକରି ଯାଉଥିବା, ସହିଯାଉଥିବା । ଯାହାର କାର୍ଯ୍ୟ, ସେଇ କାର୍ଯ୍ୟଗୁଡିକୁ ସମ୍ପନ୍ନ କରି ନେଉଥିବେ ।

..... ଶିକ୍ଷକ ଯାହା ଯେତେ କମ୍ ବା ଯେତେବେଶୀ ପାଠ ପଢ଼ିଥାନ୍ତୁ ପଛକେ, ଆମକୁ ତାଙ୍କ ନିଷ୍ଠାରୁ ତାଙ୍କର ଯୋଗ୍ୟତା ବିଚାର କରିବାକୁ ହେବ । ସିଏ ନିଜେ ଖୁସି ହୋଇ ପାଠ ପଢ଼ାଉଥିବେ, ପିଲାଙ୍କର ଆବଶ୍ୟକତା ଅନୁସାରେ ପାଠ ପଢ଼ାଇପାରୁଥିବେ, ନିଜେ ବି ପଢ଼ି ସତତ ନିଜର ଜ୍ଞାନ ବଢ଼ାଉଥିବେ ଓ ଅଧିକରୁ ଅଧିକ କାର୍ଯ୍ୟ କରି ମଧ୍ୟ କ୍ଲାନ୍ତ ହେଉ ନଥିବେ । ଶିକ୍ଷକମାନଙ୍କ ଭିତରୁ ଗୀତ ଗାଇବା ଓ ପିଲାଙ୍କୁ ଖେଳାଇବାର ଶିକ୍ଷକ ଅଛନ୍ତି ବୋଲି ମୋର ବିଶ୍ୱାସ । ପାଠଚକ୍ର ନିୟମିତ ଚାଲୁଛି, ତାହା ଜାଣି ଖୁସି ହେଲି । ପାଠଚକ୍ରର ଯୁବକ ଭାଇମାନେ ମଧ୍ୟ ପିଲାଙ୍କ ପରି ସ୍କୁଲ ପାଖରେ ଜାଗାଟିଏ ଯୋଗାଡ଼ କରି ନିଜେ ଭଲିବଲ୍ ବା ଆଉ କିଛି ଖେଳିବାର ବ୍ୟବସ୍ଥା କରିବା ଉଚିତ୍ ।....

**କଟକ, ୪ ।୫ ।୮୧**

........ଟ୍ରଷ୍ଟ ଯେତେବେଳେ ପ୍ରଥମେ ଗଢ଼ା ହେଲା, ସେତେବେଳେ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ସଂଖ୍ୟା ଅଳ୍ପ ଥିଲା । ତେଣୁ ସେହି କେନ୍ଦ୍ରଗୁଡ଼ିକର ବନ୍ଧୁମାନେ ଟ୍ରଷ୍ଟର କାର୍ଯ୍ୟକଳାପରେ ମୁଖ୍ୟ ଅଂଶ ଗ୍ରହଣ କରିବା ସ୍ୱାଭାବିକ । ବର୍ତ୍ତମାନ ସ୍କୁଲ ଗୁଡ଼ିକର ସଂଖ୍ୟା ବଢ଼ିଲାଣି, କାର୍ଯ୍ୟକ୍ରମର କ୍ଷେତ୍ରଟି ମଧ୍ୟ ରାଜ୍ୟର ନାନା ଆଡେ ବିସ୍ତାରିତ ହୋଇଗଲାଣି । ଏଥିରେ କୌଣସି ସନ୍ଦେହ ନାହିଁ ଯେ ଆଗକୁ ପୂର୍ଣ୍ଣାଙ୍ଗ ଓ ସୁନ୍ଦରଭାବରେ କାର୍ଯ୍ୟକରିବାକୁ ଆହୁରି ଅନେକ ବାଟ ବାକି ଅଛି । ବର୍ତ୍ତମାନ କ'ଣ ଅଛି, ସେ ବିଷୟରେ ଆମେ ଅସନ୍ତୋଷ ପ୍ରକାଶ କରିବା ନାହିଁ କିମ୍ବା ଦୁଃଖ କରିବା ନାହିଁ, ଆଗକୁ କ'ଣ ସବୁ କରିବା ସେଥିଲାଗି ପ୍ରସ୍ତୁତ ହେବା ।

ଟ୍ରଷ୍ଟର ବୈଠକଗୁଡ଼ିକରେ ଏହିସବୁ ଆଲୋଚନା ହେବା ଉଚିତ୍ । ଆହୁରି ମନଖୋଲାଭାବରେ ସାଧାରଣ ସମସ୍ୟା ଗୁଡ଼ିକର ସମ୍ମୁଖୀନ ହେବା ଉଚିତ୍, ଏଥିରେ ମୁଁ ମଧ୍ୟ ଏକମତ । କିନ୍ତୁ ଆମେ ଅଧିକାଂଶ ଯଦି ଖାଲି ଶୁଣିବାଲାଗି ଟ୍ରଷ୍ଟ ବୈଠକକୁ ଆସିଥିବା, ତେବେ ଆଲୋଚନା ହେବ କିପରି ? ନିଜକୁ ସାନ ବା ଛୋଟ ବୋଲି ଭାବୁଥିବା ପର୍ଯ୍ୟନ୍ତ ଅନ୍ୟମାନେ ବଡ଼ବୋଲି ଦିଶନ୍ତି । ସେମାନଙ୍କ ପ୍ରତି ବେଳେବେଳେ ଈର୍ଷା ବି ଜାତ ହୁଏ । ମାତ୍ର ସମସ୍ତଙ୍କୁ ବନ୍ଧୁରୂପେ ଗ୍ରହଣ କରିନେଲେ ଓ ହାତରେ ଥିବା କାର୍ଯ୍ୟଭିତରେ ନିଜକୁ ପୂର୍ଣ୍ଣଭାବରେ ସଂଶ୍ଳିଷ୍ଟ କରି ରଖିଥିଲେ ମୋଟେ ଏସବୁ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼େନାହିଁ । ଯାହାର କାମ ସେଇ କଥା କୁହନ୍ତି । ସେଇ ଭୟ ଭାଙ୍ଗି ଦିଅନ୍ତି, ସେଇ ଯୋଗ୍ୟ କରି ଆଣନ୍ତି ।.......

**କଟକ, ୩୧ ।୧୦ ।୮୧**

.......ତୁମେ ଓ ଅନନ୍ତ ଏକାଠି ସ୍ୱପ୍ନଦେଖିବାକୁ ଆରମ୍ଭ କଲଣି । ବଟବାବୁ ମଧ୍ୟ ତୁମମାନଙ୍କ ସାଙ୍ଗରେ ଅଛନ୍ତି । ଏଣିକି ସେହି ଗାଆଁରେ କେତେ କ'ଣ ସମ୍ଭବ ହେବ । ପରାମର୍ଶ ବାହାରୁ ନେବାର କୌଣସି ପ୍ରୟୋଜନ ରହିବ ନାହିଁ । ବାଟଗୁଡ଼ାକ ବଳେ ଦେଖାଯିବ । ମାତ୍ର ଗୋଟିଏ କଥା ମନେ ରଖିବ । ସମସ୍ତଙ୍କୁ ସାଙ୍ଗରେ ନେଇ ଯିବାକୁ ହେବ । ତେବେ ସମସ୍ତେ ଯେମିତି ଅଧିକରୁ ଅଧିକ ଯୋଗ୍ୟ ହେବାରେ ଲାଗିଥିବେ, ଭିତରେ ସର୍ବଦା ଏକ ଉନ୍ମୋଚନ ଅନୁଭବ କରି ପାରୁଥିବେ, ସେଥିପ୍ରତି

ଦୃଷ୍ଟି ରଖିଥିବ । ଯେଉଁଠାରେ ନିର୍ମଳ ଓ ଭୟମୁକ୍ତ ମନରେ ଦଶଜଣ ପର୍ଯ୍ୟନ୍ତ ଭାଇଭଉଣୀ ପରସ୍ପର ସହିତ ସମ୍ମିଳିତ ହେବେ, ସେଠାରେ ଭଗବାନ ସ୍ୱୟଂ କେଡେ ଖୁସିହୋଇ ସାଙ୍ଗରେ ବାଟଚାଲିବାକୁ ଆସିବେ ।..

**କଟକ, ୭ ।୫ ।୮୨**

........ଆମେ ନିଜେ ଯେତିକି ପ୍ରସ୍ତୁତ ହେବା, ଆମେ କରୁଥିବା ବିପ୍ଳବ ମଧ୍ୟ ସେତିକି ଦୂରଯାଏ ଯାଇପାରିବ । ଏହାହିଁ ବିପ୍ଳବୀ ଶ୍ରୀ ଅରବିନ୍ଦଙ୍କର ସର୍ବପ୍ରଧାନ ଶିକ୍ଷା । ତେଣୁ ଆମେ ହିଁ ସେଥିଲାଗି ପ୍ରସ୍ତୁତ ହେବା, ବ୍ୟକ୍ତି ହିସାବରେ ଓ ଗୋଷ୍ଠୀ ହିସାବରେ ପ୍ରସ୍ତୁତ ହେବା । ଏବଂ ଏଥିଲାଗି ଅସଲ ଆବଶ୍ୟକତା ଗୁଡିକ ହେଉଛି: ୧) ଆମ ଶରୀର ସୁସ୍ଥ ରହିବ, ମଜବୁତ ରହିବ, ସମର୍ପିତ ହୋଇରହିବ । ୨) ଆଉ କିଏ କ'ଣ କଲାକି ନ କଲା, ସେଥିପ୍ରତି ଦୃଷ୍ଟି ନଦେଇ ସବା ଆଗ ନିଜ ଭିତରେ ରହିଥିବା ଅସଲ କେନ୍ଦ୍ରଟି ସହିତ ଡୋର ଲଗାଇ ପାରିବ । ସେଇଠାରୁ ପ୍ରକୃତ ଶକ୍ତି ଓ ଉତ୍ସାହଟିକୁ ଲାଭ କରିବା । ୩) ସାନ ବଡ଼ ସମସ୍ତଙ୍କୁ ସମ୍ମାନର ସହିତ ଦେଖିବା । ସେମାନଙ୍କ ଭିତରେ ଭଗବାନ ରହିଛନ୍ତି ବୋଲି ପ୍ରତ୍ୟକ୍ଷ ଭାବରେ ଅନୁଭବ କରିବା । ଏହିସବୁ ଦିଗରେ ଆମେ ଯେତେ ଅଧିକ ପ୍ରସ୍ତୁତ ହେଉଥିବା, ଆମ ଲକ୍ଷ୍ୟ ସାଧନରେ ସ୍ୱୟଂ ଭଗବାନ ମଧ୍ୟ ଆମକୁ ସେତିକି ସହଯୋଗ କରିବାକୁ ଅପେକ୍ଷା କରି ରହିଥିବେ ।.........

**କଟକ, ୧୭ ।୩ ।୮୩**

............ଯେଉଁମାନେ ବାର୍ତ୍ତା ଦିଅନ୍ତି, ସେମାନେ ଅଲଗା ଧାତୁର ମଣିଷ । ଯେଉଁମାନେ ବାର୍ତ୍ତା ଦିଅନ୍ତି, ସେମାନେ ଯେତେ ବଢ଼ିଆ ଭାବରେ କହୁଥିଲେ ମଧ୍ୟ ତଥାପି ଦୂରଛଡ଼ା ହୋଇ ରହିଥାନ୍ତି । ମୁଁ ଲୋଭୀ ଲୋକ, ଏକାବେଳକେ ପାଖରେ ରହିବାକୁ ମନ କରିଥାଏ । ତେଣୁ ବାର୍ତ୍ତା ଦେଇପାରେ ନାହିଁ । ଆଞ୍ଚଳିକ ବୈଠକ ଲାଗି ମୁଁ ପୁଣି କି ବାର୍ତ୍ତା ଦେଇଥାନ୍ତି । ଗଣିତ ବିଜ୍ଞାନର ଆଲୋଚନା କରାଗଲାବେଳେ ମଧ୍ୟ ହୃଦୟର ସହିତ ଆଲୋଚନା କରାଯାଇପାରେ । ଏବଂ ଆମର ଯାବତୀୟ ଆଲୋଚନାରେ ଆମ ପିଲାମାନଙ୍କୁ ସବା ଆଗରେ ରଖି ଆଲୋଚନା କରାଯାଇପାରେ । ଆମର ଯାବତୀୟ ବୈଠକରେ ଏହା ହିଁ ସର୍ବମୂଳ ଆଭିମୁଖ୍ୟ ହୋଇ ରହିବା ଉଚିତ୍ ।

କଟକ, ୭ ।୬ ।୮୩

.........ସ୍କୁଲର ସାନସାନ ସମସ୍ତଙ୍କ ଲାଗି ମୋର ଅନେକ ଅନେକ ଶୁଭେଚ୍ଛା । ଆମେ ସବୁବେଳେ ସେହିମାନଙ୍କ ମୁହଁକୁ ଅନାଇ ଆମର ଉଚିତ ସଂକଳ୍ପମାନ କରିବା- ଆବଶ୍ୟକ ହେଲେ ନିଜର ମଥାକୁ କିଞ୍ଚିତ ତଳକୁ ନୁଆଁଇବା ପଛକେ ସେମାନଙ୍କୁ ନେଇ କ୍ରମଶଃ ଗଢ଼ିଉଠୁଥିବା ବିଦ୍ୟାଳୟଟିକୁ କୌଣସି ପ୍ରକାରେ ଆଘାତ ଦେବାନାହିଁ । ସେହି ବିଦ୍ୟାଳୟଟିକୁ ଅଧିକରୁ ଅଧିକ ଆନନ୍ଦମୟ ଓ ଐଶ୍ୱର୍ଯ୍ୟଯୁକ୍ତ କରି ପାରିଲେ ହିଁ ତାହାରି ମାଧ୍ୟମରେ ଆମେ ନିଜର ବ୍ୟକ୍ତିଗତ ସବୁ ଦୁଃଖ ଏବଂ ସବୁ କ୍ଷତ ଭୁଲି ଯାଇପାରିବା । ଗାଆଁର ଚାରିପାଖରେ ରହିଥିବା ସୁନ୍ଦର ପର୍ବତକୁ ଅନାଇ ସ୍ଥିର ହୋଇ କିଛି ସମୟ ଲାଗି ଏହି କଥାତକ ଭାବିବ । ତା'ପରେ ଦେଖିବାକୁ ପାଇବ ଯେ, ମୁଁ ତୁମର ପାଖରେ ଏକାବେଳେକେ ତୁମକୁ ଲାଖିକରି ବସିଛି ଓ କହୁଛି, - "ଆମେ ଏଇଠି କଦାପି ଅଟକି ରହି ଯିବା ନାହିଁ । ଆମକୁ ଆହୁରି ଅନେକ ଆଗକୁ ଯିବାକୁ ହେବ ।" ତା'ପରେ ତୁମ ମନରେ କ'ଣ ସବୁ ଭାବନା ଆସିଲା କଟକରେ ସାକ୍ଷାତ ହେଲାବେଳେ ମୋତେ ସେ କଥା କହିବ ।......

କଟକ, ୫ ।୭ ।୮୪

..........କିଏ ସମ୍ପାଦକ ବା ଆଉ କିଏ କ'ଣ ହେବ, ତାହା ବିଦ୍ୟାଳୟ ଦୃଷ୍ଟିରୁ ଆଦୌ ବଡ଼ କଥା ନୁହେଁ । ତୁମର ବିଦ୍ୟାଳୟ ପରିଚାଳନା ଦାୟିତ୍ୱରେ ଖାତାପତ୍ର ଅନୁସାରେ ଯେଉଁମାନେ ଅଛନ୍ତି, ସେମାନେ ପରସ୍ପରର କେବଳ ଦୋଷକୁ ହିଁ ଦେଖୁଛନ୍ତି । ତେଣୁ ନିଜ ଆଡକୁ ଅନାଇବା ପାଇଁ ଆଉ କାହାର ପାଖରେ ବେଳ ନାହିଁ । ହୁଏତ ସେଇଥିରୁ ସବୁ ଗଣ୍ଡଗୋଳ ବାହାରୁଛି । ଏବଂ ଅନାବଶ୍ୟକ ଅନେକ ଉତ୍ତେଜନାର ସମ୍ମୁଖୀନ ହେବାକୁ ପଡୁଛି । ଏହି ଭଉଁରୀ ଭିତରୁ ଜଣେ ଦୁଇଜଣ ବାହାରକୁ ବାହାରି ଆସି ପାରିଲେ ହୁଏତ ସମାଧାନ ହୋଇଯାଆନ୍ତା । ପରସ୍ପର ପଛରେ ଲାଗିଥିବା ପର୍ଯ୍ୟନ୍ତ ଆମର ଆଉ ଅସଲ ଲଢ଼ାଇପାଇଁ ଶକ୍ତି ବାକି ରହିବ ତ ? ଏବଂ, ତେଣେ, ପିଲାଙ୍କର କ୍ଷତି ହେବାରେ ହିଁ ଲାଗିଛି ।

ମୁଁ ଆଗରୁ କହିଛି, କୌଣସି ଜିନିଷକୁ ଭାଙ୍ଗିବାରେ କୌଣସି ବାହାଦୁରୀ ନାହିଁ । ଯଥାର୍ଥ ଭାବରେ ଗଢ଼ିବାରେ ହିଁ ବାହାଦୁରୀ । ବିଦ୍ୟାଳୟ କେବେ ଭାଙ୍ଗିବ ନାହିଁ । ମାତ୍ର ଆମେ ନିଜର ଅବିବେକ ପଣିଆ ଦ୍ୱାରା ବିକାଶର ଗତିକୁ କେବଳ

ବିଳମ୍ବିତ ହିଁ କରିପକାଉଥିବା, ଏବଂ ଏଥିରୁ ଆମଭିତରୁ କାହାକୁ ତ ଶାନ୍ତି ଲାଗୁ ନଥିବ ?.........

**କଟକ, ୧୩।୫।୮୫**

.......ତୁମେ ଏତେ ବେଶୀ ଅସ୍ଥିର ହୋଇ ପଡିବ ନାହିଁ । ମଣିଷ ସତକୁ ସତ ନିଃସ୍ୱାର୍ଥପର ହୋଇ ଆନ୍ତରିକତା ସହିତ ଯାହାକିଛି କରେ, ତାହାର ଫଳ ଅବଶ୍ୟ ସ୍ଥାୟୀ ହୁଏ । ମୁଁ ଯାହାକିଛି କଲି ବା କରୁଛି, ସେଥିଲାଗି ସମସ୍ତେ ମୋତେ ପ୍ରଶଂସା କରନ୍ତୁ ଓ ମୋରି ଦ୍ୱାରା ସବୁହେଲା ବୋଲି ସ୍ୱୀକୃତି ଦିଅନ୍ତୁ, ଏଭଳି ଅଭିଯୋଗ କରି ବାହାରିଲେ ନିଜ ଭିତରେ କଷ୍ଟ ପାଇବା ହିଁ ସାର ହୁଏ । ନିଜ ଭିତରେ ଥିବା ଭଲ ଆକାଂକ୍ଷା ଗୁଡିକ କ୍ରମେ ନିସ୍ତେଜ ମଧ୍ୟ ହୋଇଯାଆନ୍ତି । ତେଣୁ ଏହିସବୁ ସମୟରେ ନିଜ ଭିତରେ ସଂପୂର୍ଣ୍ଣଭାବରେ ନୀରବ ହୋଇ ରହିବା ଉଚିତ୍ । ତେବେ ବର୍ତ୍ତମାନର ଦ୍ୱନ୍ଦ୍ୱଗୁଡାକର କ୍ରମେ ଉପଶମ ହୋଇଯିବ, ଗତ କେତେବର୍ଷର କାର୍ଯ୍ୟକୁ ତୁମେ ଅଧିକ ସ୍ୱଷ୍ଟ ଭାବରେ ଦେଖିପାରିବ । ଆଗକୁ ବାଟ ଦେଖାଯିବ ।....

**କଟକ, ୧୨।୧୨।୮୬**

........ଆମ ଭିତରୁ ଯିଏ ଅଧିକ ବୁଝିବ, ସିଏ ଅଧିକ ସହିବ । ତାକୁ ଅଧିକ ଆଦରିନେବାକୁ ପଡିବ । ତେଣୁ ଅନ୍ୟମାନଙ୍କ ସହିତ ନିଜକୁ ସମାନ ସ୍ତରରେ ରଖି ଭୁଲ ଠିକ୍‌ର ବିଚାର କିରବା ଆଉ ମୋତେ ଚଳିବ ନାହିଁ । ମୁଁ ଅଧିକ ବୁଝିଛି ବୋଲି ଅନ୍ୟମାନଙ୍କ ଉପରେ ନିଜର ମତକୁ ଲଦି ଦେବାକୁ ମଧ୍ୟ ଆଉ ଭଲ ଲାଗିବ ନାହିଁ । ତୁମେ ଏଥର ଆଶ୍ରମରୁ ଯେଉଁ ନୂତନ ପୁଲକ ନେଇ ଫେରିଲ, ତାହାହିଁ ତୁମ ଭିତରେ ସ୍ଥାୟୀ ପ୍ରେରଣା ହୋଇ ରହୁ । ସେହି ପୁଲକ ତୁମ ଭିତରେ ସେହି ଅସଲ ଆତ୍ମୀୟତାଟିକୁ ସୃଷ୍ଟି କରୁ, ଯାହା ଅର୍ଜନ କରି ପାରିଲେ ଆମର ତଥାକଥିତ ଶତ୍ରୁମାନେ ମଧ୍ୟ ତଥାପି ଆତ୍ମୀୟ ପରି ବୋଧ ହେବେ । ସେମାନେ ବାଟ ଛାଡୁ ନଥିଲେ ବି ତୁମେ ସେହି ଆତ୍ମୀୟତା ବଳରେ ସେମାନଙ୍କ ଭିତରକୁ ପଶିଯାଇପାରୁଥିବ । ସେମାନେ କବାଟ କିଳି ରଖିଥିଲେ ମଧ୍ୟ ତୁମେ କବାଟ ଅବଶ୍ୟ ଫିଟିବ ବୋଲି ଅନନ୍ତ ଧୈର୍ଯ୍ୟର ସହିତ ଅପେକ୍ଷା କରିପାରୁଥିବ । ତେବେ ତୁମେ ସବୁଠାରେ ଜୟଲାଭ କରିପାରିବ, ସବୁ ପଥରକୁ ଟାଳି ଦେଇପାରିବ ।

ଏଥର ଏକାଗ୍ରଭାବରେ ସ୍କୁଲ ବିଷୟରେ ଲାଗ । ଗତ କେତେବର୍ଷ ଭିତରେ ସ୍କୁଲରେ ଯାହାକିଛି ଭାଙ୍ଗିରୁଜି ଯାଇଛି, ତାହାକୁ ଯୋଡି ଆଣିବାକୁ ସମସ୍ତ ସମୟ ଓ ଶକ୍ତିକୁ କାମରେ ଲଗାଅ । ପୂର୍ଣ୍ଣ ବିଶ୍ୱାସର ସହିତ ଲାଗିଯାଅ, ସବୁ ସମ୍ଭବ ହେବ । ଯିଏ ସମସ୍ତଙ୍କୁ ଏକାଠି କରିବାକୁ ଓ ଖଣ୍ଡଗୁଡିକୁ ଏକାଠି ଯୋଡିବାକୁ ବାହାରେ ତାକୁ ଅନେକ ବିଶ୍ୱାସ ଓ ଅନେକ ଆତ୍ମୀୟତା ସହିତ କାର୍ଯ୍ୟ କରିବାକୁ ହୁଏ । ତୁମେ ବର୍ତ୍ତମାନ ଏହି କାର୍ଯ୍ୟଟିକୁ ହିଁ ହାତକୁ ନିଅ, ସେଥିରେ ସଫଳ ହୁଅ, - ରୁଷି ବସିଥିବା ବନ୍ଧୁମାନଙ୍କୁ ପୁଣି ଗୋଟିଏ ପାରସ୍ପରିକ ସ୍ନେହ ଓ ବିଶ୍ୱାସର ଛାତତଳେ ଏକାଠି କରାଅ - ମୁଁ ସବାଆଗ ତୁମକୁ ଅନୁରୋଧ କରିବି । ଆଉ ସବୁକିଛି ପରେ ହେବ ।.......

**ଭୁବନେଶ୍ୱର, ୩୦ ।୧ ।୮୯**

......ସ୍କୁଲ ହସୁ, ପାଠଚକ୍ର ବଳେ ବଳେ ହସିବ । ଆମକୁ ଯେ ଏକ ପ୍ରତ୍ୟକ୍ଷ ଅନୁରାଗ ଶକ୍ତି ଏକାଠି ପରସ୍ପର ସହିତ ବାନ୍ଧି ରଖିଛି, ଆମର କାର୍ଯ୍ୟରୁହିଁ ତା'ର ଅସଲ ପରିଚୟ ମିଳିବ । ରଜତ ଜୟନ୍ତୀ ଉତ୍ସବରେ ଏହା ହିଁ ସମ୍ପୃକ୍ତ ସମସ୍ତଙ୍କର ଭାବନା ଓ ସଂକଳ୍ପ ହେଉ । ସ୍ମରଣିକା ଅପେକ୍ଷା ଏକଥା ଆମକୁ ଯଥାର୍ଥ ଅଗ୍ରଗତିରେ ବହୁତ ସାହାଯ୍ୟ କରିବ । ମୋତେ ଭୁଲ ବୁଝିବ ନାହିଁ ।

**ଭୁବନେଶ୍ୱର, ୧୮ ।୨ ।୮୯**

......ଯେ କୌଣସି ଶିକ୍ଷାକେନ୍ଦ୍ରରେ ଯାହା କିଛି ଘଟୁଛି ତାହା ଆମକୁ ଅଧିକରୁ ଅଧିକ ପ୍ରସ୍ତୁତ କରିଆଣିବା ସକାଶେ ଘଟୁଛି । ଆମରି କ୍ଷେତ୍ରଟିର ମାଧ୍ୟମରେ ଆମେ ନିଜପାଖରେ ଧରାପଡିଯାଉଛୁ । ତେଣୁ, ସହାନୁଭୂତି ସହିତ ନିଜକୁ ବୁଝିବାର ଶ୍ରଦ୍ଧା ରହିଥିଲେ ଏସବୁ ପରିସ୍ଥିତି ଦ୍ୱାରା ଆମେ ଅନେକ ଲାଭବାନ ହୋଇପାରିବା । ଏହାହିଁ ଆମକୁ ପରସ୍ପରର ନିକଟବର୍ତ୍ତୀ କରି ଆଣୁଥିବ । ପ୍ରତ୍ୟେକ କେନ୍ଦ୍ରରେ ଏହିପରି ୩/୪ ଜଣ ବନ୍ଧୁପରି ରହିଥିଲେ କେତେ କ'ଣ ସମ୍ଭବ ହୋଇଯିବ । ବାଧା ଆସିବ, ଆସୁଥିବ, - ମାତ୍ର ତାହା ଆମର ଉଦ୍ୟମ ଗୁଡିକୁ ପାହାଚକୁ ପାହାଚ ଉପରକୁ ଉଠି ଯାଉଥିବା ଲାଗି ସାହାଯ୍ୟ କରୁଥିବ । ଆମେ ଉତ୍ତମରୁ ଆହୁରି ଉତ୍ତମ ଯନ୍ତ୍ରରୂପେ ତିଆରି ହୋଇଯାଉଥିବା । କାରିଗର ଭଲଥିଲେ ସିଏ କଦାପି ମାଟିକୁ ନିନ୍ଦିବ ନାହିଁ, ମାଟିରୁ ସୁନ୍ଦର ମୂର୍ତ୍ତିଟିଏ ଅବଶ୍ୟ ତିଆରି କରି ପାରୁଥିବ ।....

**ଭୁବନେଶ୍ୱର, ୧୮ ।୧ ।୯୦**

......ପ୍ରତି ଶିକ୍ଷାକେନ୍ଦ୍ରରେ ଅନ୍ତତଃ ୩/୪ଜଣ ବ୍ୟକ୍ତି ଆମ କାର୍ଯ୍ୟଗୁଡିକର ମର୍ମକୁ ଯଥାର୍ଥ ଭାବରେ ବୁଝିଥିଲେ ଓ ସେହି ଅନୁସାରେ ଜୀବନଟିଏ ବଞ୍ଚିବାକୁ ଚେଷ୍ଟା କରୁଥିଲେ ଯାଇ ଶିକ୍ଷାକେନ୍ଦ୍ର ଗୁଡିକର ଅଗ୍ରଗତି ହୋଇପାରିବ । ଆମ ଭିତରୁ ଜଣକର ପ୍ରବେଶ ଯଦି ଯଥେଷ୍ଟ ଗଭୀର ଓ ଆନ୍ତରିକ ହୋଇଥାଏ, ତେବେ ସିଏ ଅନ୍ୟ ସମସ୍ତଙ୍କୁ ମଧ୍ୟ ଉଚିତ ମାର୍ଗରେ ପରିଚାଳନା କରିନେଇ ପାରିବ । ତେଣୁ, ପରସ୍ପରର ଭୁଲ ଠିକ୍ ବାଛୁଥିଲେ ଓ ବାହାରୁ କେତେଟା ପରିବର୍ତ୍ତନ କରୁଥିଲେ, ବିଶେଷ କିଛି ହୋଇ ପାରିବ ନାହିଁ । ଅଶାନ୍ତି ଓ ବିକ୍ଷୁବ୍ଧତା ଲାଗି ରହିଥିବ । ଆମେ ଅସଲ କ୍ଷେତ୍ରରେ ଯଦି କିଛି କରିବାକୁ ସମର୍ଥ ନ ହେବା, ଅନ୍ତତଃ ସେ ପର୍ଯ୍ୟନ୍ତ ଅପେକ୍ଷା କରି ରହିବା, ଶୁଭେଚ୍ଛା ସହିତ, ସମସ୍ତଙ୍କ ଭିତରେ ରହିଥିବା ଭଲ ଉପରେ ଦୃଢ଼ ବିଶ୍ୱାସ ରଖି ଅପେକ୍ଷା କରି ରହିଥିବା ।

ଭିତରୁ ଯଦି ଦୁର୍ବଳ ଭାବନା ଆସୁଛି, ତେବେ ନିଜକୁ ଏକାବେଳେକେ ଗଭୀର ମୂଳଦୁଆର ସ୍ତରରୁ ହିଁ ତିଆରି କରି ଆଣିବା ଉଚିତ । ଏଥିଲାଗି ଆମେ ପରସ୍ପରକୁ ଅନେକ ସାହାଯ୍ୟ କରିପାରିବା । ଏହି ଦୃଷ୍ଟିରୁ ତୁମର ନିୟମିତ ଭାବରେ ଶ୍ରମଶିବିର ମାନଙ୍କରେ ଯୋଗଦେବା ଅତ୍ୟନ୍ତ ଆବଶ୍ୟକ ।.........

**ଭୁବନେଶ୍ୱର, ୨୮ ।୨ ।୯୬**

.........ତୁମ ତାଲିକାରେ ପଇଁଚାଳିଶ ଜଣ ଭାଇଭଉଣୀଙ୍କର ନାମ ରହିଛି । ସେମାନଙ୍କର ଉତ୍ସାହକୁ ମୁଁ ବୁଝି ପାରୁଛି । ମାତ୍ର, ଯେଉଁ ଅଞ୍ଚଳରେ କର୍ମକ୍ଷେତ୍ରରେ ସକ୍ରିୟଭାବରେ ରହିଥିବା ଏତେ ଏତେ ବ୍ୟକ୍ତି ଅଛନ୍ତି, ସେଠାରେ ଗୋଟିଏ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରକୁ କିପରି ଏତେ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡୁଛି ? ତୁମ ସହିତ ସେହି ସଂକ୍ରାନ୍ତରେ କଥା ମଧ୍ୟ ହୋଇଥିଲା । ତୁମେ ଆଉଥରେ ବିଚାର କରିବ । ବନ୍ଧୁମାନଙ୍କ ସହିତ ବି କଥା ହେବ ।

ନିଜର ଆୟରୁ ତୁମେ ଘର ଓ ଶିକ୍ଷାକେନ୍ଦ୍ର ଉଭୟକୁ ଚଳାଇବ ବୋଲି କାହିଁକି ଭାବିଲ ? ଶିକ୍ଷାକେନ୍ଦ୍ର ପଛରେ ଗୋଟିଏ ବନ୍ଧୁଗୋଷ୍ଠୀ ନ ରହିବା ପର୍ଯ୍ୟନ୍ତ ଆମ ଶିକ୍ଷାର ବେଶୀ କିଛି ଉଦ୍ଦେଶ୍ୟ ଆଦୌ ସାଧିତ ହୋଇପାରିବ ନାହିଁ । ମୁଁ ଏକୁଟିଆ ସବୁ ବୋହିବି, ଚୂନା ହୋଇଯିବି ପଛକେ, ତଥାପି ବୋହିବି, ଏହା ଏକ ଉଗ୍ର ମନର

ଉକ୍ତି । ବାବାଜିଆ ମାନସିକତାର ଉକ୍ତି । ମୋର ଏହି କଥାରେ ଦୁଃଖ କରିବ ନାହିଁ । ମୁଁ ତୁମକୁ ଦୁଃଖ ଦେବାର ମତଲବ ରଖି ମୋଟେ ଏକଥା କହୁନାହିଁ । ଆମେ ପୃଥିବୀରୁ ବିଦାୟ ନେଇ ଗଲାପରେ ମଧ୍ୟ ଆମକୁ ନିମିତ୍ତ କରି ଭଗବାନଙ୍କର ଏହି ପୃଥିବୀରେ ଆରମ୍ଭ ହୋଇଥିବା କାର୍ଯ୍ୟଗୁଡିକ ଯେପରି ତଥାପି ଚାଲିବ । ସେହି କଥାଟିକୁ ଆଖି ଆଗରେ ରଖି ମୁଁ ଏପରି ଲେଖୁଛି ।.........

## ପ୍ରସନ୍ନ କୁମାର ଭାରତୀ·

### ଭୁବନେଶ୍ୱର, ୧୧ ।୪ ।୯୫

ଗତ ଟେଷ୍ଟରେ ତୁମେ ରଖିଥିବା ନମ୍ବରରୁ ଜାଣୁଛି ଯେ, ତୁମେ ମଧ୍ୟ ଡ୍ରଇଂରେ ଠିକ୍ 'ମୋରି' ପରି ଗୋଟିଏ ଗଧ । ମୋର ମନେ ଅଛି ମୁଁ ସପ୍ତମ ଶ୍ରେଣୀରେ ଜିଲ୍ଲା ପରୀକ୍ଷାରେ ଡ୍ରଇଂରେ ୩୦ରୁ ୬ ରଖିଥିଲି । ମାତ୍ର, ସେଥିଲାଗି ତୁମେ ମନଦୁଃଖ କରିବ ନାହିଁ ।

କିନ୍ତୁ, ଡ୍ରଇଂର ଅଳ୍ପ ନମ୍ବର ପାଇଁ ତୁମକୁ ଅନ୍ୟ ବିଷୟମାନଙ୍କରେ ଅଧିକ ନମ୍ବର ରଖି କ୍ଷତିପୂରଣ କରିବାକୁ ପଡିବ । ତା'ହେଲେ ତୁମର ଫଳ ଅନେକ ଅଧିକ ସନ୍ତୋଷଜନକ ହୋଇପାରିବ । ଗଣିତରେ ତୁମେ ଏଥର ୯୦ରୁ ଅଧିକ ରଖିବା ସକାଶେ ଉଦ୍ୟମ କରି, ଟେଷ୍ଟ ପେପରରେ ଥିବା ଗଣିତ ପ୍ରଶ୍ନ ଗୁଡିକୁ କଷି ପକାଇବ । ଭିତରେ ଅଧିକ ସ୍ଥିର ହୋଇଯିବ ଏବଂ ଅଧିକ ଆତ୍ମବିଶ୍ୱାସ ସହିତ ଗଣିତ କରିବ । ଏତକ କରିବା ପରେ ଯଦି କିଛି ବାକି ରହିଲା, ତେବେ ମୁଁ ସେଠାକୁ ଗଲେ ମୋତେ କହିବ । ଆମେ ଉଭୟେ ମିଶି କିଛି କରିବା ।........

## ପ୍ରଦୀପ କୁମାର ବେହେରା

### ଭୁବନେଶ୍ୱର, ୧୬ ।୧୨ ।୯୭

.........ଜୀବନରେ ଜଣେ ମଣିଷ କେତେ କୁଆଡେ ଯିବ, କେତେକେତେ ନୂଆ ପରିସ୍ଥିତିର ସମ୍ମୁଖୀନ ହେବ । ତଥାପି, ନିଜ ଭିତରେ ସ୍ଥିର ରହିଥିଲେ ସେ ଖୁସି ହୋଇ ସବୁକିଛି ଗ୍ରହଣ କରି ନେଇ ପାରିବ, ଖୁସି ରହିବ ଏବଂ ଜୀବନରେ ଅଗ୍ରଗତି ମଧ୍ୟ କରୁଥିବ ।

ସେଠାରେ ତୁମେ ମରାଠୀ ଭାଷା ମଧ୍ୟ ଶିଖିଯାଇ ପାରିବ । ଅକ୍ଷର ତ ହିନ୍ଦୀ ଭାଷାର ଅକ୍ଷର ପରି । ତେଣୁ ଅସୁବିଧା ଲାଗିବ ନାହିଁ ।........

**ଭୁବନେଶ୍ୱର, ୨୮ ।୪ ।୯୮**

...........କ୍ରମେ ସେଠା ଜାଗାଟି ଭଲ ଲାଗିଲାଣି ଏବଂ ତୁମେ ଆଗ୍ରହର ସହିତ କାମଗୁଡିକୁ ଶିଖିବାକୁ ଆରମ୍ଭ କଲଣି, ଏହା ସୁସଂବାଦ । ଏହିପରି ଭାବରେ ହିଁ ଆମ ସମସ୍ତଙ୍କୁ ପୃଥିବୀରେ ରାସ୍ତାଟିଏ ମିଳିଯାଏ । ରାସ୍ତାଟିଏ ମିଳିଗଲେ ସାହସ ବି ବଢ଼େ ଓ ନିଜ ଉପରେ ବିଶ୍ୱାସ ଆସିଯାଏ ।

ଖାଲି ସେଠାକାର ଭାଷା ନୁହେଁ, ସେଠାକର ଖାଦ୍ୟଦ୍ରବ୍ୟ, ଚଳିଚଳଣ ଓ ସଂସ୍କୃତି ସହିତ ନିଜକୁ ଅଭ୍ୟସ୍ତ କରିନେବ । ଏହି ଗୁଣଟିକୁ ଶିକ୍ଷା କରିଥିଲେ ପୃଥିବୀର ଯେଉଁଠାକୁ ଗଲେ ମଧ୍ୟ କଦାପି ଅଡୁଆ ଲାଗିବ ନାହିଁ ।........

## ପ୍ରଶାନ୍ତ କୁମାର ସାହୁ

**ଭୁବନେଶ୍ୱର, ୪ ।୬ ।୯୨**

..........ଏହି ଛୁଟିରେ ପ୍ରତିଦିନ କିଛି କିଛି ପାଠ ପଢ଼ିବ । ସପ୍ତମଶ୍ରେଣୀ ପାଇଁ ଗଣିତ ଓ ଇଂରାଜୀକୁ ମଜବୁତ କରିନେବ । ଏହି ବର୍ଷଯାକ ତୁମେମାନ ଯେବେ ଇଛା କରିବ, ମୁଁ ପଢ଼ାଇବାକୁ ସେଠାରେ ଯାଇ ପହଞ୍ଚିଯିବି ।

**ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ, ତା୮ ।୭ ।୯୨**

ତୁମେ ପଠାଇଥିବା ଅନୁବାଦ ଗୁଡିକ ପ୍ରାୟ ଠିକ୍ ହୋଇଛି । ମଝିରେ ମଝିରେ କେତୋଟି ସଂଶୋଧନ ଦରକାର ହେବ । ମୁଁ ପଠାଉଥିବା ଅନୁବାଦଗୁଡିକ ତୁମେମାନେ ଅଲଗା ଗୋଟିଏ ଖାତାରେ କରୁଥିବ ଓ ତାହାକୁ ତୁମମାନଙ୍କୁ ଇଂରାଜୀ ପଢ଼ାଉଥିବା ଅପା ଓ ଭାଇଙ୍କୁ ଦେଖାଇ ସଂଶୋଧନ କରିନେଉଥିବ । ନଚେତ୍ ମୁଁ କେବେ ସେଠାକୁ ଗଲେ ସଂଶୋଧନ କରିଦେବି ।

**ଭୁବନେଶ୍ୱର, ୨୨ ।୯ ।୯୨**

........ତୁମର ପାଠପଢ଼ା ଦ୍ରୁତ ଗତିରେ ଚାଲୁଥିବ ବୋଲି ଆଶା କରୁଛି । ଯେପରି ହେଉ ପଛକେ, ଡିସେମ୍ବର ଶେଷ ସୁଦ୍ଧା ପ୍ରତ୍ୟେକ ବିଷୟର ପାଠ ଶେଷ ହୋଇଯିବା

ଉଚିତ୍ । ତେବେ ତୁମେମାନେ ଜାନୁଆରୀ ମାସରୁ ନିଃଶଙ୍କ ଭାବରେ ବୋର୍ଡ଼ ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇପାରିବ ।..........

**ଭୁବନେଶ୍ୱର, ୧୫ ।୧ ।୯୩**

.........ମୁଁ ଯେଉଁସବୁ ଦେଶକୁ ଯାଇଛି, ସେସବୁ ଦେଶରେ ମାତୃଭାଷା ଇଂରାଜୀ ନୁହେଁ । ତେଣୁ ତୁମ ବୟସର ପିଲା ୧୧ବର୍ଷ ପୂରିବା ପରେ ଇଂରାଜୀ ଭାଷା ଶିଖନ୍ତି । ତେଣୁ ତୁମ ସହିତ ଇଂରାଜୀରେ ପତ୍ରବନ୍ଧୁ କରିବା ସୁବିଧା ହେବ ନାହିଁ । ଇଂଲଣ୍ଡ, ଅଷ୍ଟ୍ରେଲିଆ, କାନାଡା ବା ଆମେରିକାର ପତ୍ରବନ୍ଧୁଟିଏ ଯୋଗାଡ଼ ହେଲେ ଭଲ ହେବ । ଏ ବିଷୟରେ ସେଠାରେ କଥା ହେବା ।......

**ଭୁବନେଶ୍ୱର, ୨୧ ।୨ ।୯୪**

........ତୁମ ପଢ଼ାପଢ଼ି ଠିକ୍ ଭାବରେ ଚାଲିଛି ବୋଲି ତୁମେ ଲେଖିଛ । ତାହାହିଁ ସବୁଠାରୁ ବଡ଼ କଥା । କାରଣ ନବମ ଶ୍ରେଣୀରେ ପାଠ ଏତେ ବଢ଼ିଯିବ ଯେ ଅଷ୍ଟମରେ ଠିକ୍ ଭାବରେ ମୂଳଦୁଆ ନ ପଡିଥିଲେ ସେତେବେଳେ ସବୁ ଭାରି ଆଣ୍ଠ ଲାଗିବ । ତୁମେମାନେ ସେହି ବିଷୟରେ ସର୍ବଦା ସଚେତନ ଥିବ । ବିଶେଷ କରି ଇଂରାଜୀ ଓ ଗଣିତ, - ଏହି ଦୁଇଟି ବିଷୟରେ ।.......

**ଭୁବନେଶ୍ୱର, ୧୩ ।୬ ।୯୪**

.........ନବମ ଶ୍ରେଣୀର ପାଠ ତ ନବମ ଶ୍ରେଣୀରେ ପଢ଼ା ହେବ । କିନ୍ତୁ, ଅଷ୍ଟମ ଶ୍ରେଣୀରେ ଯେଉଁସବୁ ପାଠ କଞ୍ଚା ରହିଯାଇଛି ବୋଲି ତୁମେ ଭାବୁଛ, ଛୁଟିରେ ସେହିଗୁଡିକର ମୂଳଦୁଆ ପ୍ରସ୍ତୁତ କରିନେଇ ଥିଲେ ଅଧିକ ଭଲ ହୋଇଥାନ୍ତା । ସର୍ବୋପରି ଇଂରାଜୀ ଅନୁବାଦ ମଧ୍ୟ କିଛି ହୋଇଥିଲେ ତାହା ଆଗକୁ ଅଧିକ କାମ ଦେବ ।.......

**ଭୁବନେଶ୍ୱର, ୪ ।୮ ।୯୪**

........ଗୋଟିଏ କାମରେ ମୁଁ କେତେ ଘଣ୍ଟା ସମୟ ଦେଉଛି, ତାହା ସବାବଡ଼ କଥା ନୁହେଁ । ମୋର ହୃଦୟର ସହିତ ସେହି କାମଟିକୁ କରିବା ଲାଗି ଇଛା କରୁଛି କି ନାହିଁ ତାହାହିଁ ଅସଲ କଥା । ନିଜର ଏକ ହୃଦୟ । ମନୁଷ୍ୟମାନଙ୍କର ସମସ୍ତଙ୍କର ରହିଛି । ସେଇଟିକୁ ଛୁଇଁ ପାରିବାକୁ ହେବ । ନିଜକୁ ନିଜର ବନ୍ଧୁ ବୋଲି ଗ୍ରହଣ କରି ନେବାକୁ

ହେବ । ନିଜଠାରୁ ଲୁଚି ରହିବା ଲାଗି କୌଣସି ଚେଷ୍ଟା କରିବ ନାହିଁ । ତେବେ ଆଗ୍ରହର ବାପା ମଧ୍ୟ ଅଳବତ ଆସିବ । ପରୀକ୍ଷା କରି ଦେଖିନିଅ ।

ନବମ ଶ୍ରେଣୀରେ ଅନେକ ନୂଆ ନୂଆ ପଢ଼ାଯିବ । ତେଣୁ ଘରପଢ଼ାରେ ଖୁବ୍ ନିୟମିତ ରହିବାକୁ ପଡିବ । ନହେଲେ ପଛରେ ପଡିଯିବ ଓ ତା'ପରେ ଶ୍ରେଣୀରେ ପଢ଼ାଯାଉଥିବା ପାଠ ମଧ୍ୟ କଷ୍ଟ ମନେହେବ ।........

**ଭୁବନେଶ୍ୱର, ୬ ।୯ ।୯୪**

.........**କେଉଁ ଗୀତ କିଏ ଗାଉଛି, ତଦ୍ୱାରା ପ୍ରାର୍ଥନାର ସଂଜ୍ଞା** ନିରୂପଣ ହୋଇପାରେ ନାହିଁ । କିଏ କେତେ ଅନ୍ତର ଦେଇ କ'ଣ କରୁଛି, ପ୍ରାର୍ଥନାର ଅସଲ ଜାତିଟି ସେଇଥିରୁ ଜଣାପଡେ । କିଛି ତୁଣ୍ଡଦ୍ୱାରା ନ କହି ମଧ୍ୟ ଅନେକ ନୀରବତା ଦ୍ୱାରା ପ୍ରାର୍ଥନା କରନ୍ତି ।

ତଥାପି, ପ୍ରାର୍ଥନା ବିଷୟରେ ମଣିଷ ମଣିଷରେ ମତଭେଦ ନିଷ୍ଚୟ ରହିବ । ତେଣୁ ଏଇଟା ଠିକ୍, ସେଇଟା ଠିକ୍ ବୋଲି ଜିଦ୍‌ଧରି ବସିବା ମଧ୍ୟ ଉଚିତ୍ ନୁହେଁ । ତୁମେ ସେପରି କରିବ ନାହିଁ । ଗୋଟିଏ ବଗିଚାରେ ଅନେକ ପ୍ରକାରର ଫୁଲ ଫୁଟିବା ପରି ଏହି ପୃଥିବୀରୂପକ ବଗିଚାରେ ନାନା ପ୍ରକାରର ମତ ଥିବା ମଣିଷ ଅବଶ୍ୟ ରହିବେ । ଆମେ ସମସ୍ତଙ୍କୁ ମିଶାଇ ଏହି ଘରଟିକୁ ଦେଖିବା । ତେବେ ସମସ୍ତେ ଆମର ନିଜର ପରି ଅନୁଭୂତ ହେବେ ।......

**ଭୁବନେଶ୍ୱର, ୪ ।୧୦ ।୯୪**

........ଅସଲ ଆନନ୍ଦ ସେତିକିବେଳେ ମିଳେ, ଯେତେବେଳେ ପାଠ ପଢୁଥିବା ସମୟରେ ଜଣେ ବ୍ୟକ୍ତି ପାଠପଢୁଛି ବୋଲି ଏକାବେଳେକେ ଭୁଲି ଯାଇଥାଏ । ଜଣେ ଶିକ୍ଷକଙ୍କୁ ମଧ୍ୟ ଅସଲ ଆନନ୍ଦ ସେତିକିବେଳେ ମିଳେ, ଯେତେବେଳେ ସେ ପିଲାମାନଙ୍କୁ ପାଠ ପଢ଼ାଉଛି ବୋଲି ଏକାବେଳେକେ ଭୁଲି ଯାଇଥାଏ । ତୁମ ଗଜପତି ଜିଲ୍ଲାରେ କ'ଣ ଅନ୍ୟବିଧିରେ ସବୁ ଚାଲେ କି ?

ଭୁବନେଶ୍ୱର, ୨୨ ।୧୧ ।୯୪

..........**ଷଷ୍ଠ** ବା ସପ୍ତମ ଶ୍ରେଣୀରେ ପଢ଼ିବା ସମୟରେ ତୁମେ କ'ଣ ଯେପରି ଥିଲ, ବର୍ତ୍ତମାନ ସେହିପରି ରହିଛ ? ତେବେ ଆମର ଚେତନା, ନିଜପ୍ରତି ଏବଂ

ସଂସାର ପ୍ରତି ଆମର ଦୃଷ୍ଟି ବିକଶିତ ହେଉଥିବା ଓ ବଦଳିଯାଉଥିବା ସଙ୍ଗେ ସଙ୍ଗେ ଆମ ଚିଠିର ପ୍ରକୃତି ମଧ୍ୟ ବଦଳି ଯାଉଥିବା ଉଚିତ୍ । ଯେତେବେଳେ ସବୁଚିଠି ଏକାପରି ଲେଖାହୋଇଥାଏ, ସେତେବେଳେ ମନେହୁଏ, ଏହି ମହାତ୍ମା କ'ଣ ଏକବର୍ଷ ମଧ୍ୟରେ କୌଣସି ନୂଆ ଅନୁଭବରେ ପ୍ରବେଶ କରି ନାହାନ୍ତି - ସେ ନିଜ ଜୀବନରେ କ'ଣ ନିଜକୁ ଓ ପୃଥିବୀକୁ କୌଣସି ପ୍ରଶ୍ନ ପଚାରି ନାହାନ୍ତି ?

ଆଗ ନିଜ ଜୀବନରେ ତୁମେ କ'ଣ ଚାହୁଁଛ, ସେକଥା ମୋଟାମୋଟି ସ୍ପଷ୍ଟ ହୋଇଯିବା ଉଚିତ୍ । ତେବେ ବର୍ତ୍ତମାନର ଶିକ୍ଷା ପ୍ରଣାଳୀ ତୁମର କ'ଣ ଉପକାର କରିବ ବା ନକରିବ, ତାହା ଅଧିକ ସହଜ ଭାବରେ ଜାଣିହେବ ।.......

ଭୁବନେଶ୍ୱର, ତା୨ ।୧ ।୧୯୯୫

.........କାଲି ଖରାବେଳେ ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲି । ସେଠାରେ ଦୂରଦର୍ଶନରେ ଗୋଟିଏ ତେଲେଗୁ ଫିଲ୍ମ ଦେଖିବାକୁ ମିଳିଲା । ତାହା ଏ ପାଖରୁ ସେପାଖ ସଙ୍ଗୀତରେ ଭରିଛି । ଫିଲ୍ମର ନାଆଁ ସ୍ୱାତୀ କିରଣ । ତାହାର ନାୟକ ପିଲାଟିଏ । ତୁମଠାରୁ ବର୍ଷେ କମ୍ ବା ତୁମର ସମାନ ବୟସର । ଦିଶୁଥିଲା ଠିକ୍ ତୁମରି ପରି । ଫିଲ୍ମ ପୂରା ସମୟ ତୁମ କଥା ଓ ଶ୍ରୀନୁ କଥା ଭାବୁଥିଲି । ଏବଂ, ସମଗ୍ରଭାବରେ ଆମ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଗୁଡିକ କଥା ମଧ୍ୟ ଭାବୁଥିଲି । (ପିଲାର ଅନ୍ତର୍ନିହିତ ଗୁଣ ଓ ପ୍ରତିଭାଗୁଡିକର ବିକାଶ କରିବା ସକାଶେ ଆମେ ସବୁ କେଡେ ବଡ଼ ଦମ୍ଭ ଓ ସଂକଳ୍ପରେ ନୂଆ ସ୍କୁଲ ଗୁଡିକୁ ଆରମ୍ଭ କରିଥିଲୁ । ଆମ ପାଖରେ ଏକଦା ସାନ ବୟସରେ ଆସି ଜୁଟିଥିବା ପିଲାମାନଙ୍କ ଭିତରେ ଆମେ କେତେ କେତେ ସମ୍ଭାବନାର ସୂଚନା ପାଇଥିଲୁ । ସେମାନେ ବଡ଼ ହେଲେ ଓ ଏବେ ପାଠ ଆଉ ପରୀକ୍ଷା ଛଡା କିଛି ହେଲେ ଦେଖି ପାରୁନାହାନ୍ତି । ସେମାନେ ଆମରି ବଡ଼ମାନଙ୍କ ପରି ଏହି ପୁରୁଣା ସମାଜଟା ସହିତ ଗୋଟାସୁଦ୍ଧା ଖାପ ଖାଇଯିବେ ବୋଲି ଆମରିଠାରୁ ମନ୍ତ୍ର ଶିଖି ତିଆରି ହେବାରେ ଲାଗିଛନ୍ତି ।)

ତୁମକୁ ମୁଁ ଗତ ୭ବର୍ଷ ହେଲା ଦେଖି ଆସୁଛି । ଶ୍ରୀନୁକୁ ଗତ ଅଢ଼େଇବର୍ଷ ହେଲା । ମୁଁ ଭାବୁଛି, ତୁମେମାନେ ମଧ୍ୟ ଆମରି ପରି ସେହି ପୁରୁଣା ଛାଞ୍ଚ ଅନୁସାରେ କ'ଣ ଗୋଟାଏ ହେବ ବୋଲି ଘୋର ଉଦ୍ୟମ କରିବାକୁ ଆରମ୍ଭ କରି ଦେଲଣି । ନିଜ ଭିତରେ ସ୍ୱତନ୍ତ୍ର ଓ ଅନନ୍ୟ ହୋଇ କିଛି ଗୁଣ ଓ ପ୍ରତିଭା ରହିଛି ବୋଲି ସତେଅବା

ଜାଣିଶୁଣି ଭୁଲି ଗଲଣି । ଶ୍ରୀନୁ ତ ଆହୁରି ଟିଉସନ୍ ସାରଙ୍କ ପାଖରେ Extra ତପସ୍ୟା କରୁଛି । ଭାବୁଛି, ଏଣିକି ତୁମମାନଙ୍କୁ ଦେଖିଲେ ଭାରି ଡର ମାଡିବ । ତୁମମାନଙ୍କ ଆଗରେ ନିଜର ମନକଥା ଗୁଡିକୁ କହିବା ସକାଶେ ଆଦୌ ସାହସ ହେବ ନାହିଁ । ମୁଁ ଭାବୁଥିଲି, ତୁମେ ଦୁହେଁ କେବେ ସେହି ଫିଲ୍ମଟିକୁ ଦେଖନ୍ତ ଯଦି, ତେବେ ମୋ କଥାଗୁଡିକୁ ବୁଝିପାରନ୍ତ ।

........ ନିଜ ଭିତରକୁ ଚାହିଁ ଦେଖିବ । ମୋତେ ଗାଳି ଦେବ ନାହିଁ । ନିଜ ଭିତରେ ଯେ ଅସୀମ ଶକ୍ତି ଓ ସମ୍ଭାବନା ରହିଛି, ନିଜେ ସଂକଳ୍ପ କରିପାରିଲେ ଯାଇ ସେ କଥା ବୁଝି ହୁଏ । ନିଜ ଭିତରେ ମହାବଳୀଙ୍କୁ ଅନୁଭବ କରିପାରିଲେ ବୁଝି ହୁଏ ।........

**ଭୁବନେଶ୍ୱର, ୨୫ ।୬ ।୯୫**

.......ଆମେ ଇଚ୍ଛା ନକଲେ ଖାଲି ଗୋଟାଏ-ନୁହେଁ, ସମସ୍ତ ଜୀବନଟା ମଧ୍ୟ ବେକାର ହୋଇଯିବ । ମାତ୍ର; ଯିଏ ପର୍ବତର ଶିଖରକୁ ଉଠିବା ଲାଗି ମନ କରି ଜୀବନରେ ବାଟ ଚାଲୁଥିବ, ତା'ର ପ୍ରତ୍ୟେକ ମୁହୂର୍ତ୍ତ ମଧ୍ୟ ଘଟଣାମୟ ହୋଇରହିବ । ଆଦୌ ବେକାର ଯିବ ନାହିଁ ।

ଦଶମ ଶ୍ରେଣୀ ଆରମ୍ଭ ହେଲା । ଅନ୍ତତଃ ଗୋଟାଏ ବର୍ଷ ପାଇଁ ତାହାକୁ ଲକ୍ଷ୍ୟ ରଖି ପଢ଼ିବା ଆରମ୍ଭ କରିଦିଅ । ବୋର୍ଡ଼ ପରୀକ୍ଷା ପାଇଁ ନିଜର ବାଟଟିକୁ ନିଜେ ବାହାର କର । ତେବେ ଆବଶ୍ୟକ ବଳ ମଧ୍ୟ ନିଜ ଭିତରୁ ସବୁବେଳେ ମିଳି ଯାଉଥିବ ।

**ଭୁବନେଶ୍ୱର, ୬ ।୧୧ ।୯୫**

.......କୌଣସି କାର୍ଯ୍ୟକୁ ବୋଝ ବୋଲି ଅନୁଭବ ନ କଲେ ତାହା ହୁଏତ ଯେତେ ବଡ଼ ବୋଝ ହୋଇଥିଲେ ମଧ୍ୟ ତଥାପି ବୋଝ ପରି ଲାଗେ ନାହିଁ । ବୋଝ ବୋଲି ଅନୁଭବ ନ କରିବାର ଉପାୟ ହେଉଛି ଖୁସି । ଖୁସି ହୋଇ ନିଜ ଇଚ୍ଛାରେ ହିଁ ତାକୁ ବହନ କରିବା । ଅନେକ ମଣିଷ ଖୁସି ରହି ପାରନ୍ତି ନାହିଁ, ତେଣୁ ଆଦୌ କୌଣସି ବୋଝ ନଥିଲେ ମଧ୍ୟ ସେମାନେ ବୋଝଟାଏ ରହିଛି ବୋଲି କହି ଅଭିଯୋଗ କରନ୍ତି ।

ତୁମେ ଯେଉଁ ପାଠ ପଢୁଛ, ସେଥିରେ ପରୀକ୍ଷା ଦେବାକୁ ହିଁ ପଡେ । ଦେଉଳ ଭିତରେ ପଶି ସେଠାରେ ଥିବା ଠାକୁରଙ୍କୁ ନମସ୍କାର କାହିଁକି କରିବି ବୋଲି କହିବା ଉଚିତ୍ ନୁହେଁ । ତେବେ, ନିଜର ସର୍ବୋତ୍ତମ ଶକ୍ତିରେ ପରୀକ୍ଷା ପାଇଁ ପ୍ରସ୍ତୁତ ହୁଅ ।

**ଭୁବନେଶ୍ୱର, ୧୨ ।୧୨ ।୯୫**

.........ବର୍ତ୍ତମାନ ତୁମେ ସମସ୍ତେ ଟେଷ୍ଟ ନେଇ ବ୍ୟସ୍ତ ଥିବ । ଖୁସୀର କୌଣସି କାରଣ ନଥାଏ । ଗୋଟିଏ ସ୍ଥାନର ଜଳବାୟୁ ପରି ଜଣେ ବ୍ୟକ୍ତି ଅତ୍ୟନ୍ତ ସ୍ୱାଭାବିକ ଭାବରେ ଖୁସୀ ଅନୁଭବ କରନ୍ତି । ସେହିଭଳି ଖୁସୀ ରହିଥିଲେ ସବୁକିଛି ସୁନ୍ଦର ଦେଖାଯାଏ ଓ ସବୁକାର୍ଯ୍ୟ ସହଜ ହୋଇଯାଏ । ଖୁସୀଟା ହୃଦୟର କଥା, ତେଣୁ ନିଜ ମସ୍ତିଷ୍କ ଦ୍ୱାରା ଭାବି ସେ ବିଷୟରେ କିଛି ନିର୍ଣ୍ଣୟ କରିହେବ ନାହିଁ ।........

**ଭୁବନେଶ୍ୱର, ସରସ୍ୱତୀ ପୂଜା, ୯୬**

.........ଯଦି ମୁଁ ତୁମମାନଙ୍କୁ ପଢ଼ାଉଥାନ୍ତି, ତେବେ ଏହି ବିଷୟରେ ଆଗ ତୁମମାନଙ୍କୁ ନିଜ ନିଜର ରଚନା ଲେଖିବାକୁ କହିଥାନ୍ତି । ସମସ୍ତେ ଲେଖିସାରିବା ପରେ ଆମେ ଉଭୟ ପକ୍ଷ ଏକାଠି ବସି ବିଷୟଟି ଉପରେ ଆଲୋଚନା କରିଥାନ୍ତେ । ତଦ୍ୱାରା ବିଷୟଟି ଅଧିକ ସ୍ପଷ୍ଟ ହୋଇ ଯାଇଥାନ୍ତା ।.........

**ଭୁବନେଶ୍ୱର, ୧୮ ।୬ ।୯୬**

.....ମୁଁ ଡାକ୍ତର ହେବି ବୋଲି ଭାବିଥିଲି । ବଡ଼ଭାଇ ଡାକ୍ତରୀ ପଢୁଥିବାରୁ ଘରେ ସେଥିରେ ରାଜି ହେଲେ ନାହିଁ । ମୋତେ ଇଞ୍ଜିନିଅରିଙ୍ଗ ଆଡେ ଯିବାକୁ କହିଲେ । ମୁଁ କହିଲି, ଯଦି ବିଜ୍ଞାନ ପଢ଼ିବି, ତେବେ ବିଜ୍ଞାନରେ ହିଁ ରହିବି । ଇଞ୍ଜିନିଅରିଂ ପାଇଁ ବିଜ୍ଞାନ ପଢ଼ିବି ନାହିଁ । ସେତେବେଳେ ଖାଲି ବିଜ୍ଞାନ ପଢ଼ିବା ପରେ ଅଧିକ ଗବେଷଣା ଲାଗି କୌଣସି ସୁଯୋଗ ଖୋଲିଥିଲା । ବିଦେଶକୁ ଯିବାର ସମ୍ଭାବନା ମଧ୍ୟ ଘର ଲୋକଙ୍କ ପ୍ରଗନାର ବାହାରେ ଥିଲା । ତେଣୁ ସେମାନେ ସେଥିରେ ବି ରାଜି ହେଲେ ନାହିଁ । ସେଇଥିଲାଗି ଆର୍ଟସ୍ ଭିତରକୁ ଆସିଲି । ଗଣିତ ଗୋଟିଏ ବିଷୟ ହୋଇ ରହିଲା ।

ସେତେବେଳେ ଭାରତବର୍ଷରେ ଖାଲି ମନୋବିଜ୍ଞାନ ପଢ଼ିବାର ବି ସେତେ ଜାଗା ନଥିଲା । ତେଣୁ ଶାନ୍ତିନିକେତନରେ ଦର୍ଶନ ଓ ବିଦେଶରେ ମନୋବିଜ୍ଞାନ ପଢ଼ିଲି । ଆଦୌ କୌଣସି ଗୁଳାଭିତରେ ଆବଦ୍ଧ ନରହି ମନଖୁସିରେ ପଢ଼ିଲି । କେତେ କୁଆଡେ ମାଡି ଗଲି । ଏବଂ, ତାହାରି କ୍ରମରେ ନିଜକୁ ପାଇଲି ।

.......... ନିଜ ଅଧ୍ୟୟନ ଜରିଆରେ ଏଣିକି ପୃଥିବୀକୁ ନିଜ ଆଖିରେ ଦେଖିବାର ବାଟଟି ପାଇବ । ସେଥିଲାଗି ପ୍ରସ୍ତୁତ ତ ?.........

**ଭୁବନେଶ୍ୱର, ୧୪ ।୭ ।୯୬**

.....ପରୀକ୍ଷା ଆଗକୁ ଆହୁରି ଆସିବ । ତେଣୁ, ସେଗୁଡିକ ପାଇଁ ନିଜକୁ ପ୍ରସ୍ତୁତ କରିବାରେ ଅଧିକ ଭାବନା ଓ ଶକ୍ତି ନିଯୋଜିତ ହେଉ । ପଛଗୁଡାକ ବିଷୟରେ ଏତେ ଭାବିଲେ ନିଜକୁ ଦୁର୍ବଳ ବୋଲି ଲାଗିବ ।

ଧର୍ମ ଓ ଶାସନ ବହିରେ ଧର୍ମ ବିଷୟରେ ଲେଖିଥିଲେ । ସେଇ The Human Cycle ବହିରେ ଧର୍ମ ବିଷୟରେ ଗୋଟିଏ ପୂର୍ଣ୍ଣ ଅଧ୍ୟାୟ ରହିଛି । ସେଥିରୁ ତୁମକୁ ନିଜପ୍ରଶ୍ନର ଅନେକ ଉତ୍ତର ମିଳିଯିବ । କେବେ ଦେଖାହେଲେ ବି ଆମେ କଥାବାର୍ତ୍ତା ହୋଇପାରିବା ।

ମଣିଷ ମୁଣ୍ଡ ଗଣି ଆତ୍ମୀୟତା ବଢ଼ାଏ ନାହିଁ । ତେଣୁ, ଅଧିକ ମଣିଷ ଆତ୍ମୀୟପରି ଲାଗିଲେ ଭୟର କୌଣସି କାରଣ ନାହିଁ । ଯଥାର୍ଥଭାବରେ ଆତ୍ମୀୟ ହୋଇଯିବା ଜୀବନର ଏକ ଦୃଷ୍ଟିକୋଣ । ଜଣକୁ ଆତ୍ମୀୟ କରି ପାଇବା ପାଇଁ ଅନେକ ମଣିଷ ହୁଏତ ପନ୍ଦରଜଣଙ୍କୁ ପର ପରି ଦେଖୁଥାନ୍ତି । ସେମାନେ ଭାରି କଷ୍ଟ ପାଆନ୍ତି । ଗୋଟିଏ ଗଛ ଭଲ ଲାଗିଲେ, ପୃଥିବୀଯାକର ଗଛ ଭଲ ଲାଗନ୍ତି ।

+୨ ପ୍ରଥମ ବର୍ଷରେ ଇଂରାଜୀ ଭାଷାଟିକୁ ଟାଣ କରି ନେବାରେ ହିଁ ଅଧିକ ମନ ଦେବ । ତାହା ଭବିଷ୍ୟତରେ ଅନେକ କାମ ଦେବ ।........

**ଭୁବନେଶ୍ୱର, ୧୨ ।୩ ।୯୭**

......ଭଗବାନଙ୍କ ପାଇଁ କାନ୍ଦିବାର ଅର୍ଥ ହେଉଛି, ଭଗବାନଙ୍କର ଏହି ପୃଥିବୀପାଇଁ କାନ୍ଦିବା - ନିଜକୁ ସେହି ପୃଥିବୀର କାର୍ଯ୍ୟ ନିମନ୍ତେ ଅଧିକରୁ ଅଧିକ ଯୋଗ୍ୟ ଓ ପ୍ରସ୍ତୁତ କରିପାରିବା ସକାଶେ କାନ୍ଦିବା । ଆମେ ସମସ୍ତେ ନିଜର ଦୁଃଖରେ କାନ୍ଦୁ, ନିଜ ସ୍ୱାର୍ଥରେ ବାଧା ଆସିଲେ କାନ୍ଦୁ । ଭଗବାନଙ୍କ ପାଖରେ କେବଳ ସେହି ସ୍ୱାର୍ଥ ପ୍ରଣୋଦିତ ଦୁଃଖ ଗୁଡ଼ାକୁ ଜଣାଇବାରେ ଲାଗିଥାଉ । ଅର୍ଥାତ୍ ଆମେ ନିଜ ପାଇଁ କାନ୍ଦୁଥାଉ । ଏଥର ବୁଝି ପାରିବ ।

ସ୍ୱାଧୀନତା ଏକ ଅନୁଭୂତି । ପରିବେଶ ସେଥିପାଇଁ ଅନୁକୂଳ ହୋଇପାରେ, ନ ହୋଇପାରେ । ନିଜ ଭିତରେ ରହିଥିବା ଗୁଣ ଓ ସମ୍ଭାବନାଗୁଡିକର ବିକାଶ ନିମନ୍ତେ ସ୍ୱାଧୀନତା ପ୍ରତ୍ୟେକ ମନୁଷ୍ୟର ଦରକାର । ଏବଂ, ଆପଣାର ସକଳ ସାମର୍ଥ୍ୟ ଓ ଯୋଗ୍ୟତା ସହିତ ସର୍ବଜନର କାମରେ ଲାଗିପାରିବା ନିମନ୍ତେ ସ୍ୱାଧୀନତା

ଦରକାର । ଏହି ବିଷୟରେ ଶ୍ରୀଅରବିନ୍ଦ Human Cycle ବହିରେ ବିସ୍ତୃତ ଭାବରେ ଲେଖିଛନ୍ତି ।

.......କଲେଜ ପାଠ ବାହାରେ ତୁମେ ଯେ ଅନ୍ୟ ବହି ପଢ଼ିବାର ସୁଯୋଗ ପାଉଛ. ତାହା ଅତ୍ୟନ୍ତ ଆନନ୍ଦର କଥା । ଇଂରାଜୀ ଭାଷାକୁ ଆହୁରି ପକ୍କା କରିନିଅ, ଯେପରିକି ତାହା ନିଜ ଓଡ଼ିଆ ଭାଷା ପରି ସହଜ ଲାଗିବ । ତେବେ ତୁମ ଲାଗି ଜ୍ଞାନର କେତେ ଅନାବିଷ୍କୃତ ଭଣ୍ଡାର ସର୍ବଦା ଉନ୍ମୁକ୍ତ ହୋଇ ରହିଥିବ ।........

**ଭୁବନେଶ୍ୱର, ୨୪ ।୫ ।୯୮**

.......ଆମେ ପୂର୍ଣ୍ଣ ସାଧୁତା ସହିତ ଯାହାକିଛି କରିବା, ତାହା କଦାପି ପ୍ରହସନ ନୁହେଁ । ତେଣୁ, ଆମେ ସେଇ ବାଟରେ ହିଁ ଯିବା । ଏଇଟି ପରେ ଯଦି ଆଉକିଛି ଆମ ପାଇଁ ଅପେକ୍ଷା କରୁଥିବ, ତେବେ ସେଇଟି ମଧ୍ୟ ସମୟ ଅନୁସାରେ ଆସି ପହଞ୍ଚିଯିବ । ତେଣୁ, ଯିଏ ଯେପରି ଚାଲିଛେଁ ସେଥିରେ ଆମେ ଆଦୌ ଅନ୍ୟମନସ୍କ ହେବା ନାହିଁ ।

ଆମେ ଅନ୍ୟମାନଙ୍କର ଉକ୍ତିଗୁଡିକୁ ପଢ଼ିବା ମାତ୍ର ସେମାନଙ୍କ ସହିତ ଝଗଡ଼ା କରିବା ନାହିଁ । ସେମାନେ ନିଜର ଉପଲବ୍ଧିର କଥାଗୁଡିକୁ କହିଛନ୍ତି, ଆମେ ମଧ୍ୟ ଆମ ନିଜର ଉପଲବ୍ଧିର କଥା କହିବାକୁ ଅଧିକରୁ ଅଧିକ ଯୋଗ୍ୟ ହେଉଥିବା । ସେଇଥିରେ ହିଁ ପରସ୍ପରକୁ ସାହାଯ୍ୟ କରିବା ।.........

**ଭୁବନେଶ୍ୱର, ୧୫ ।୧ ।୯୯**

...........ଯେ ଆଗ ବାଟ ଚାଲନ୍ତି, ଏତେ ଭାବନ୍ତି ନାହିଁ । ବାଟ ଚାଲିବା ଲୋକକୁ ସେହିବାଟରେ ହିଁ ସହଚରୀମାନେ ମିଳିଯାଆନ୍ତି । ସହଚରୀମାନେ ହିଁ ପୃଥିବୀର ସର୍ବୋତ୍ତମ ଗାଇଡର କାର୍ଯ୍ୟ କରନ୍ତି । ଜୀବନଟାଯାକ ସମ୍ମୁଖରେ ପଡିଛି । ସେଥିପାଇଁ ନିଜ ଭିତରେ ସ୍ୱଭାବତଃ ଏକ ଉଲ୍ଲାସଭାବ ଆସିବ । ତା'ପରେ ଆବଶ୍ୟକ ସାହସ ଏବଂ ସାମର୍ଥ୍ୟ ମଧ୍ୟ ମିଳିଯିବ । ତେଣୁ ହାଲୁକା ହୁଅ । ବାଟଟିକୁ ନିଜେ ହିଁ ତିଆରି କରିବାକୁ ହୁଏ । ତାହାହିଁ ସର୍ବାଧିକ ଆନନ୍ଦ ଦିଏ ।

ଗୋଷ୍ଠୀ ଓ ବ୍ୟକ୍ତି ପରସ୍ପରର ବିରୋଧୀ ନୁହନ୍ତି । ଅସଲ ବ୍ୟକ୍ତି ବଳେ ବଳେ ଅନ୍ୟମାନଙ୍କୁ ଖୋଜେ । ମାତ୍ର ଯିଏ ନିଜ ପାଖରେ ଲୁଚି ଲୁଚି ବୁଲୁଥିବ, ସିଏ ଅନ୍ୟମାନଙ୍କ ଠାରୁ ମଧ୍ୟ ନିଜକୁ ଦୂରଛଡା କରି ରଖିଥିବ ।

**ଭୁବନେଶ୍ୱର, ୧୯ ।୨ ।୯୯**

........ତୁମେ std. II ରେ ପଢୁଥିବାବେଳେ ରାମଭାଇ ମୋତେ ତୁମ ଶ୍ରେଣୀକୁ ନେଇଯାଇଥିଲେ । ତୁମେ ସମସ୍ତେ ଗୀତ ଗାଇଲ । ମୁଁ ଶୁଣୁଥାଏ । ତା'ପରେ ମୁଁ ବାହାରକୁ ଆସି ତୁମ ବିଷୟରେ ରାମଭାଇଙ୍କୁ ଯାହା କହିଥିଲି, ତାହା ନିଶ୍ଚୟ ମନେ ରଖିଥିବେ । ତା'ପରେ ସିଏ ତ ସେଠାରୁ ଚାଲିଗଲେ । ବର୍ତ୍ତମାନ ମୁଁ ଭାବୁଛି, ସେଦିନ ମୁଁ ଆଦୌ ମିଛ କହି ନଥିଲି ।

ଅଠର ବର୍ଷ ବୟସରେ ଆମେ ବେଶୀ ଭାବପ୍ରବଣ ହେବା ନାହିଁ । ଭାବଗୁଡିକ ବଢ଼ିଲେ ଭାବପ୍ରବଣତା କମିଯାଏ । ଭାବ ବଢ଼ିଲେ ଜ୍ଞାନ, କର୍ମ ଓ ଶ୍ରଦ୍ଧା ସବୁକିଛି ବଡ଼ ସହଜରେ ହୃଦୟର ବୋଲ ମାନନ୍ତି । ହୃଦୟ ହେଉଛି ମଣିଷର ଅସଲ ଆଖି, ସବୁଠାରୁ ଅଧିକ ଦେଖିପାରେ ଓ ସବୁଠାରୁ ଅଧିକ ସମଗ୍ରଭାବେ ଦେଖିପାରେ । ତା'ପରେ Contradiction ଗୁଡିକ ମୋତେ Contradiction ପରି ଲାଗେ ନାହିଁ । ଆମ ପୃଥିବୀରୂପୀ ଗୋଲାକଟିର ଉତ୍ତରମେରୁ ଓ ଦକ୍ଷିଣ ମେରୁ କ'ଣ ପରସ୍ପରର Contradiction ? ସେମାନଙ୍କୁ ପରସ୍ପରର ପରିପୂରକ ବୋଲି ଜାଣିବାକୁ ହୁଏ । ସେହି ସମୟଟି ମଧ୍ୟ ଜୀବନରେ ଆସେ ।

କ'ଣ କରିବ, ନ କରିବ, ସେ ବିଷୟରେ ବେଶୀ ଚିନ୍ତାକର ନାହିଁ । କେବଳ ନିଜକୁ ପ୍ରସ୍ତୁତ କରିଯାଅ । ନିଜେ ନିଜର ବନ୍ଧୁ ହୋଇପାରିଲେ ଜଣେ ବ୍ୟକ୍ତିର କଣ ଆବଶ୍ୟକ, ସିଏ ତାହା ଖୁବ୍ ଅନୁଭବ କରିପାରେ । ତେଣୁ, ମୂଳଦୁଆଗୁଡିକ ମଜବୁତ ହେଉ । ହଁ, ଇଂରାଜୀ ଭାଷା ଜ୍ଞାନ କ୍ରମେ ପକ୍କା ହୋଇ ଆସୁଛି ନା ? ତେବେ, ତୁମ ଆଗରେ ଏହି ପୃଥିବୀରେ କେତେ କେତେ ସମ୍ଭାବନାର ଭଣ୍ଡାର ଖୋଲିଯିବ ।

'କାଳକୁ କଜ୍ଜଳ' ପଢୁଛ । 'ବିଶ୍ୱକୁ ଗବାକ୍ଷ' ପଢ଼ିବା ପାଇଁ ମନ ହେଲାଣି । ସେଗୁଡିକର ମାଧ୍ୟମରେ ଆହୁରି ନିବିଡ଼ଭାବରେ ବୁଝି ପାରିବ । ଜାଣିବ ଯେ, ମୋ' ଭିତରେ, ସମ୍ଭବତଃ ସବୁ ମଣିଷଙ୍କ ଭିତରେ ଯେଉଁଟି ସବୁଠାରୁ ଅସଲ, ତାହା ସାରା ପୃଥିବୀରେ ବନ୍ଧୁ ହୋଇ ରହିବାକୁ ଚାହେଁ, ସାରା ପୃଥିବୀରେ କାମରେ ଲାଗିବାକୁ ଇଚ୍ଛା କରୁଥାଏ ।

**ଭୁବନେଶ୍ୱର, ୨୭ ।୯ ।୯୯**

...........ଆମେ ନିୟତିକୁ ଆମର ବନ୍ଧୁ କରି ନେବା । ବନ୍ଧୁ ସାଙ୍ଗରେ ମଧ୍ୟ ସମୟ

ସମୟରେ ଲଢ଼ିବାକୁ ପଡେ । ତେଣୁ ସେଥିଲାଗି ଏତେ କାତର ହୋଇ ପଡିବା ନାହିଁ । ଉଭୟେ ଗାନ୍ଧୀ ଓ ଶ୍ରୀ ଅରବିନ୍ଦ ଏହି Lover's quarrel ଏବଂ Loving Struggle ବିଷୟରେ କହିଛନ୍ତି । ଦେଖାହେଲେ ବୁଝାଇଦେବି ।

.............ଆମ ପୁଅ ସେହିଭଳି ତା' ମାଆର ପ୍ରେରଣା ପାଇ ଡାକ୍ତରୀ ପଢ଼ିବାକୁ ମନ କରିଥିଲା । କିନ୍ତୁ ଶେଷକୁ Computerରେ ଗଲା । ତୁମର ସେହି ସୌଭାଗ୍ୟ ଥିଲାପରି ମନେ ହେଉଛି । ଖୁସି ହୋଇ ଆମେ ଯେଉଁଠାରେ ପ୍ରବେଶ କରିବା, ସେହି ଜଗତଟାକୁ ମଧ୍ୟ ନିଜର ରୁଚି ଅନୁରୂପ ଘରପରି ଗ୍ରହଣ କରି ନେଇପାରିବା । ପ୍ରଶାନ୍ତ ମଧ୍ୟ ପାରିବ । ସମୟ ଅନୁସାରେ ପାହାଚ ଉଠାମାନ ହୋଇଯାଉଥିବ ।

ଅସୁରର ଶକ୍ତି ନେଇ ନିଜକୁ ବିଭିନ୍ନ କ୍ଷେତ୍ରରେ ପ୍ରବିଷ୍ଟ କରାଅ, ତେବେ, ଭିତରେ ଯେଉଁ ବନ୍ଧୁଟି ଅଛି, ସେଇ ନିଜ ପାଇଁ କ୍ଷେତ୍ରଟିଏ ବାଛି ନେବ ।

## ପୂର୍ଣ୍ଣଚନ୍ଦ୍ର ପାତ୍ର

**ଭୁବନେଶ୍ୱର, ୧୨ ।୬ ।୮୯**

........ତୁମେ ଏଣିକି ଅନ୍ୟପ୍ରକାର ହେବ । ତୁମେ ଚିଠିରୁ ଏହି ପ୍ରତିଶ୍ରୁତିର ସ୍ୱର ଶୁଣି ମୁଁ ଭାରି ଆଶ୍ୱସ୍ତ ହେଲି । ଅନ୍ୟମାନେ ତ ଇନ୍ଧନ ଯୋଗାଇବେ, ମାତ୍ର ମୁଁ ତାକୁ ଗ୍ରହଣ କଲେ ସିନା ତଦ୍ୱାରା କ୍ଷତିଗ୍ରସ୍ତ ହେବି ? ଅସଲ ଅଗ୍ନି ଆମ ଭିତରେ ରହିଛି । ସେହି ଅଗ୍ନିଟିକୁ ନ ଚିହ୍ନି, ବାହାରୁ ଇନ୍ଧନ ଆଣି ଆମେ ଯେଉଁ ଅଗ୍ନିଟିର ସଂଯୋଗ କରୁ, ତାହା ଆମକୁ ଖାଲି ଦହି ପକାଏ, ମୋଟେ ଉଜ୍ଜ୍ୱଳ କରେ ନାହିଁ ।

ମଣିଷ ଏମିତି ଧକ୍କା ଖାଏ, ଧକ୍କା ଖାଇ ଆପଣାକୁ ଆବିଷ୍କାର କରେ, ଆପଣାକୁ ଆବିଷ୍କାର କରିବା ସଙ୍ଗେ ସଙ୍ଗେ ପାହାଚ ଉଠିଯାଉଥାଏ । ଏଣିକି ତୁମ ଜୀବନର ଧାରା ସେହିପରି ହେବ । ପିଲାମାନେ ତୁମକୁ ଅନୁରାଗର ସହିତ ଲୋଡିବେ । ତୁମେ ସେମାନଙ୍କୁ ହାତଧରି ଆଗକୁ ବାଟ କଢାଇନେବ । ଏହି କ୍ଷେତ୍ରରେ ଭୟର କୌଣସି ସ୍ଥାନ ନ ଥିବ । ଇନ୍ଦ୍ରାବତୀରେ ତୁମ ଭଳି ଜଣେ ପ୍ରକୃତ ନିଷ୍ଠାଯୁକ୍ତ ମଣିଷର ଉପସ୍ଥିତି ସେଠା ବାତାବରଣରେ ଅନେକ ପରିବର୍ତ୍ତନ ଘଟାଇବାର କାରଣ ହେବ । ଗତବର୍ଷ ଠାରୁ ମୁଁ ସର୍ବଦା ତାହାହିଁ ଆଶା କରି ଆସିଛି ।........

## ମଧୁ ସୂଦନ ମହାପାତ୍ର

**ଭୁବନେଶ୍ୱର, ୩୧ ।୧ ।୯୫**

.........ଆପଣଙ୍କର ଚିଠି ପାଇବାପରେ ଇତି ମଧ୍ୟରେ ଲେଖାଟିକୁ ସଂପୂର୍ଣ୍ଣ ପଢ଼ି ନେଇଛି । ମୋର ମନେ ହେଲା, ଆପଣ ପ୍ରାୟ ବାକ୍ୟ ବାକ୍ୟ ଅନୁବାଦ କରି ନେଇଛନ୍ତି । ଶବ୍ଦ ପ୍ରୟୋଗ ଅତ୍ୟନ୍ତ ମଧୁ ଭାଷାର ହୋଇଛି । ମୁଁ ଯେଉଁ ଲେଖା କଥା ଆପଣଙ୍କୁ କହିଥିଲି ତାହା ମସ୍ତିଷ୍କରୁ ନୁହେଁ, ପ୍ରଧାନତଃ ହୃଦୟ ଭିତରୁ ଲେଖା ହୋଇଥାନ୍ତା । ଭାଷା ଅତ୍ୟନ୍ତ ସରଳ ହୋଇଥାନ୍ତା । ଅଥଚ ଭାବରେ ଗଭୀରତା ରହିଥାନ୍ତା । ମୂଳ ପୁସ୍ତକର ବିଷୟ (ବାକ୍ୟ ଗୁଡିକ ନୁହେଁ) ସବୁ ଥାଆନ୍ତା । ଏବଂ, ଶ୍ରୀଅରବିନ୍ଦଙ୍କର ଏହି ବିଷୟରେ ଦୃଷ୍ଟି ସ୍ୱାତନ୍ତ୍ର୍ୟ ଗୁଡିକ ପ୍ରାଞ୍ଜଳ ହୋଇ ଉଠିଥାନ୍ତା । ଆପଣ ମୋ କଥାର ମର୍ମ ନିଶ୍ଚୟ ବୁଝୁଥିବେ । ଜଣେ ଲେଖକଙ୍କ ସହିତ ଏକ ଅନ୍ତର୍ଗତ ଏକାତ୍ମତା ଲାଭ କରିଥିଲେ ଭାଷା ଓ ବାକ୍ୟ ଯୋଜନା ଯେପରି ହୁଅନ୍ତା, ଏଇଟି ସେହିପରି ହୋଇଥାନ୍ତା । ଆମେ ମୂଳ ଲେଖାଟିର ଗଠନ ଭିତରେ ନିଜର ଦୃଷ୍ଟି ଓ ମତଗୁଡିକୁ ମଧ୍ୟ କଦାପି ପୂରାଇ ନ ଦେବା ପାଇଁ ସଚେତନ ରହିଥାନ୍ତେ ।

ଆପଣତ ଅଧିକ ସମୟ ନେବାକୁ ଇଚ୍ଛା କରିଛନ୍ତି । ତେଣୁ ସବୁଟିକୁ ଆଉଥରେ ଲେଖନ୍ତୁ । ଅଧ୍ୟାୟଗୁଡିକୁ ପ୍ରଥମେ ପାଠ କରି ସେଗୁଡିକରେ ମର୍ମପ୍ରବେଶ କରନ୍ତୁ । ତା'ପରେ ସେଥିରେ କେଉଁଗୁଡିକ ଗୋଟିଏ ଗୋଟିଏ ବିଶେଷ ସନ୍ଦେଶର ମର୍ଯ୍ୟାଦା ବହନ କରିଛି, ସେଗୁଡିକୁ ନିଜର ନକ୍ସା ଭିତରେ ଗାର ଦେଇ ରଖନ୍ତୁ । ତା'ପରେ ଲେଖନ୍ତୁ । ପାରାଗ୍ରାଫ ପରେ ପାରାଗ୍ରାଫ ଯେ ଆମେ ଓଡ଼ିଆରେ ଲେଖିବା, ତାହାର କୌଣସି କାରଣ ନାହିଁ । ମାତ୍ର, ଭାବକ୍ରମଟି ଅକ୍ଷୂର୍ଣ୍ଣ ରହୁ ।

## ମଧୁସ୍ମିତା ଗନ୍ତାୟତ (ମିତୁ)

..........ପ୍ରତ୍ୟେକ ମନୁଷ୍ୟ ଭିତରେ କେତେ ନା କେତେ ଶକ୍ତି ରହିଛି । ବିପଦ ଓ ଦୁଃଖବେଳେ ହିଁ ତାହାର ପରୀକ୍ଷା ହୁଏ । ଦୁଃଖର ନିଆଁରେ ଆମେ ଅଧିକ ଉଜ୍ଜ୍ୱଳ ହେଉ । ସେଥିପାଇଁ ଉପଯୁକ୍ତ ଆତ୍ମବିଶ୍ୱାସ ରହିଥିବା ଉଚିତ । ଏତେ ବଡ଼ ଜଗତରେ ଆମକୁ ପ୍ରକୃତରେ କେହି ଛାଡିଯାଆନ୍ତି ନାହିଁ । ଆମକୁ ଦୃଶ୍ୟ ହୁଅନ୍ତି ନାହିଁ ସିନା, ତଥାପି ଆମର ସାଥିରେ ରହିଥାନ୍ତି । ତେଣୁ, ନିଜର ମନକୁ ବୁଝାଇ ଦେବ ।

ପଢ଼ିବାରେ ମନ ଲାଗୁନାହିଁ, ବୁଝିଲି । ସବୁ ମଣିଷଙ୍କର କଦାପି ଗୋଟିଏ ବିଷୟରେ ମନ ଲାଗିବା ଉଚିତ୍ ନୁହେଁ । ତେବେ ଆଉ କେଉଁଟିରେ ମନ ଲାଗୁଛି । ପୂରା ସ୍ଥିର ହୋଇ ତାହା ଭାବିବ । ତେବେ ନିଜର ବାଟଟିକୁ ମଧ୍ୟ ଦେଖିବାକୁ ପାଇବ । ସେହି ବାଟଟି ତୁମ ଜୀବନରେ ଦର୍ପଣ ପରି କାମ ଦେବ, ଏବଂ ତାହାରି ଉପରେ ପ୍ରତିଫଳିତ କରି ଦେଖି ପାରିଲେ ତାହା ମଧ୍ୟ ଭଲ ଲାଗିବ ।..........

## ମୀନା କୁମାରୀ ଗନ୍ତାୟତ (ମିନୁ)

### ଭୁବନେଶ୍ୱର, ୩ ।୯ ।୯୩

........ପୂର୍ଣ୍ଣାଙ୍ଗ ଶିକ୍ଷା ତୁମକୁ ଭଲ ଲାଗୁଛି ଓ ତୁମେ ସେଥିପାଇଁ କାର୍ଯ୍ୟ କରିବ ବୋଲି ଯେ ଭାବୁଛ, ତାହା ଅତ୍ୟନ୍ତ ଆନନ୍ଦର କଥା । ମାତ୍ର ତୁମକୁ ସେଥିଲାଗି ଯୋଗ୍ୟ ହେବାକୁ ପଡିବ । ନିଜ ଜ୍ଞାନର ମୂଳରୁ ତୁମକୁ ମଜବୁତ କରିବାକୁ ହେବ । ଆମେ ନିଜେ ଟାଣ ହୋଇ ତିଆରି ହୋଇଥିଲେ ସିନା ଆମ ପାଖରେ ପଢ଼ିବାକୁ ଆସୁଥିବା ପିଲାମାନଙ୍କୁ ତିଆରି ହେବାରେ ସାହାଯ୍ୟ କରିପାରିବା । ତେଣୁ, ନିଜ ଦୁଃଖ ଏତେ ଭାରି ଲାଗିବା ଉଚିତ୍ ନୁହେଁ । ଅନ୍ୟମାନଙ୍କ ପାଇଁ ବଞ୍ଚିବ ବୋଲି ଯିଏ ସ୍ଥିର କରେ, ନିଜ ଭିତରଟାକୁ ସେ ସେହି ଅନୁସାରେ ତିଆରି କରିଦିଏ ।..........

### ଭୁବନେଶ୍ୱର, ୯ ।୬ ।୯୮

.........ବୟସ ବଢ଼ିବା ସଙ୍ଗେ ସଙ୍ଗେ ମଣିଷ ନିଜ ଭିତରେ ସ୍ଥିର ହୋଇଆସେ, ଟାଣ ହୋଇଆସେ । ତେବେ ଯାଇ ଭଗବାନଙ୍କର ଏହି ପୃଥିବୀରେ ସେ ପ୍ରକୃତରେ କିଛି କାମରେ ଲାଗିପାରେ । ଯେଉଁମାନେ ନିଜ କେନ୍ଦ୍ରଟି ଭିତରେ କିଳି ହୋଇ ରହିଥାନ୍ତି, ସେମାନେ ଗେହ୍ଲା ପିଲାଙ୍କ ଭଳି ନିଜର ଅସୁବିଧାଗୁଡିକୁ ହିଁ ଏତେ କରି ଦେଖାଇବାରେ ଲାଗିଥାନ୍ତି । ଆମେ ସେହିପରି ହେବା ନାହିଁ । ଭିତରେ ସ୍ଥିର ହୋଇଆସିବା । ଏହି ପୃଥିବୀ ଆମକୁ ଅଧିକରୁ ଅଧିକ ଭଲ ଲାଗୁଥିବ । ବିଶେଷତଃ, ଜଣେ ଶିକ୍ଷକ ଭାବରେ ନିଜକୁ ତିଆରି କରିବାକୁ ହେଲେ ଏସବୁ ଆଗ ହେବା ଉଚିତ ।........

### ଭୁବନେଶ୍ୱର, ୧ ।୨ ।୯୯

.........ତୁମେ ପଢ଼ାଉଥିବା ପିଲାମାନେ ଭଲ ଲାଗୁଛନ୍ତି, ତେଣୁ ସେହିମାନଙ୍କ ପାଇଁ ଅଧିକରୁ ଅଧିକ ଯୋଗ୍ୟ ହେବାକୁ ଚେଷ୍ଟା କରିବାରେ ହିଁ ତୁମର ସବୁଠାରୁ ଅଧିକ

ସମୟ ବିତିପାରିବା ଉଚିତ୍ । ନିଜ ବିଷୟରେ ମିଛଟାରେ ଏତେଗୁଡ଼ାଏ ଭାବି କ୍ଳାନ୍ତ ହୋଇ ପଡିବା ଆଦୌ ଉଚିତ୍ ନୁହେଁ । ଆମର ଜୀବନ ଯେତିକି ଅନ୍ୟ ମାନଙ୍କ ପାଇଁ ଅର୍ପିତ ହୋଇ ରହିଥିବ, ଆମେ ସେତିକି ସେତିକି ନିଜର ଅସୁବିଧା ଗୁଡିକ ଜୟ କରିପାରିବା । ଭିତରେ ସବୁବେଳେ ହାଲୁକା ବି ଲାଗିବ । ଥରେ ମନକୁ ଦୃଢ଼ କରି ପରୀକ୍ଷାକରି ଦେଖ, ତେବେ ମୁଁ ଠିକ୍ କଥା କହୁଛି ବୋଲି ନିଶ୍ଚୟ ଅନୁଭବ କରିପାରିବ ।

ଜଣେ ଶିକ୍ଷକକୁ ଅନେକ କିଛି ପଢ଼ିବାକୁ ଓ ଅନେକ କିଛି ହେବାକୁ ପଡିବ । ନହେଲେ ଶିକ୍ଷକର କାର୍ଯ୍ୟ ମଧ କ୍ରମେ ନିରସ ଲାଗିବାକୁ ଆରମ୍ଭ ହେବ ।.........

**ଭୁବନେଶ୍ୱର, ୫ ।୪ ।୯୯**

........ଅସଲ ଜୀବନ ଆସୁଛି । ଆମେ ସେଥିଲାଗି ପ୍ରସ୍ତୁତ ହେବା । ନିଜକୁ ଅସଲ ଯୋଗ୍ୟ କରିବା ଏବଂ ସାହସର ସହିତ ଆଗକୁ ଯିବା । ଆମେ ଏତିକି କରି ପାରିଲେ ଆମକୁ ସାହାଯ୍ୟ କରିବା ଓ ଉତ୍ସାହ ଦେବା ଲୋକ ସର୍ବଦା ମିଳିଯିବେ ।

ଏଣିକି ଆହୁରି ଅଧିକ ବହି ପଢ଼ିବ । ତେବେ ନିଜର ବିଚାର ଗୁଡିକ ମଧ ଅଧିକ ସ୍ପଷ୍ଟ ହୋଇଯିବ । ସମୂହ ଆଲୋଚନା ମାନଙ୍କରେ ଅଂଶଗ୍ରହଣ କରିବ । ଭୟ ତ୍ୟାଗ କଲେ ଜୀବନରେ ଅନେକ ବିଷୟ ଅତ୍ୟନ୍ତ ସହଜ ହୋଇଯିବ ।

## ମନୋରଞ୍ଜନ ସାହୁ

**ଭୁବନେଶ୍ୱର, ୩ ।୧୧ ।୯୫**

..........ତୁମେ ନିଜର ରୁଚି ଓ ଆକାଂକ୍ଷା ଅନୁସାରେ ନିଜ ପାଇଁ ଏକ କର୍ମସଂସ୍ଥାନ ସୃଷ୍ଟି କରିବ । ସେଥିରେ ଅନ୍ୟ କାହାରି କିଛି କହିବାର ନାହିଁ । ତଥାପି ମୁଁ ଭାବୁଛି, ଏମ୍.ଏ ପରୀକ୍ଷାଫଳଟା ବାହାରିବା ଯାଏ ଅପେକ୍ଷା କରିବା ଉଚିତ୍ । ତରତରରେ କିଛି ଆଗରୁ କ'ଣ କିଛି ଆବୋରି ନେଇଥିଲେ ସେତେବେଳେ ହୁଏତ ଦ୍ୱିଧାରେ ପଡିବାକୁ ହୋଇପାରେ । ତଦ୍ୱାରା, ତୁମକୁ ନିଯୁକ୍ତି ଦେଇଥିବା ଅନ୍ୟମାନେ ମଧ ଅସୁବିଧାରେ ପଡିବେ ।.........

**ଭୁବନେଶ୍ୱର, ୨୫ ।୯ ।୯୫**

........ମୁଁ ଧରି ନେଉଛି ଯେ, ଶାନ୍ତିନିକେତନରେ ଅବସ୍ଥାନ କାଳରେ ତୁମେ

ବଙ୍ଗଳା ଓ ହିନ୍ଦୀ ଭାଷାରେ ଏକ ସହଜ ସାମର୍ଥ୍ୟର ସ୍ତରକୁ ଆସି ଯାଇଥିବ । ଇଂରାଜୀ ଭାଷା ପ୍ରତି ଯେଉଁ କୁଣ୍ଠା ଆଗରୁ ରହିଥାଏ, ତାହା ମଧ୍ୟ ବହୁତ ପରିମାଣରେ ଦୂର ହୋଇଯାଇଥିବ । ସେହି ଭାଷାମାନଙ୍କରେ ଗୋଟିଏ ଗୋଟିଏ ଅଗାଧ ସମୁଦ୍ର ରହିଛି ଯାହାକୁ ସ୍ୱୀକାର କରିନେଇ ପାରିଲେ, ତୁମେ ଓଡ଼ିଆ ସାହିତ୍ୟ ମଧ୍ୟକୁ ମଧ୍ୟ ବହୁ ରତ୍ନ ବୋହି ଆଣିବାକୁ ସମର୍ଥ ହୋଇପାରିବ । ତେଣୁ, ଆମର ବନ୍ଧୁତା ଯାତ୍ରା ଆରମ୍ଭ ହୋଇଯାଉ ।

**ଭୁବନେଶ୍ୱର, ୨୩।୧୦।୯୫**

......ଗତ ଗୋଟିଏ ମାସ ଭିତରେ କ'ଣ ସବୁ ପଢ଼ିଲ ବା ଲେଖିଲ, ସେଥିରୁ ମୋତେ ଭାଗ ଦେଇନାହଁ । ଓଡ଼ିଆ ସାହିତ୍ୟ ପାଇଁ ସତକୁ ସତ ଶ୍ରଦ୍ଧା ରଖିଥିବା ମଣିଷ ପ୍ରତ୍ୟେକ ଦିନ କିଛି ପଢ଼ିବ ଓ କିଛି ଲେଖିବ । ପୃଥିବୀଯାକରୁ କିଛି ସଂଗ୍ରହ କରୁଥିବ ଓ ପୃଥିବୀକୁ କିଛି ଅବଶ୍ୟ ଦେଉଥିବ । ଏହି ଉଭୟରୀତିରେ ସିଏ ଅଧିକରୁ ଅଧିକ ଧନୀ ହେବାରେ ଲାଗିଥିବ ।......

**ଭୁବନେଶ୍ୱର, ୨୩।୧୧।୯୫**

.........ଯେଉଁ ଡିଗ୍ରୀ ପାଇଁ ତୁମେ ଏତେ ସମୟ ଓ ଅର୍ଥ ଦେଇଛ, ତାହାକୁ କେବେ ନିନ୍ଦା କରନା । ଗୋଟାଏ ଡିଗ୍ରୀ ଜୀବନରେ ସବୁକିଛି ଦେଇ ପାରିବ ନାହିଁ । ମାତ୍ର, ତାହାକୁ ଅର୍ଜନ କରିବାରେ ଆମେ ଯେଉଁ ଦୁଇବର୍ଷ ସମୟ ଦେଇଛୁ, ତାହାକୁ ଆମେ କେତେ ନା କେତେ ପରିପୂର୍ଣ୍ଣକାରୀ ଭାବରେ ନିଜକୁ ସବଳ କରି ଗଢ଼ିବାରେ କାମରେ ଲଗାଇ ପାରିବା । ଆମେ ପ୍ରତ୍ୟେକେ ଇଚ୍ଛାକଲେ ଗୋଟିଏ ଡିଗ୍ରୀ ପାଇଁ ପଢୁଥିବାର ଆଳରେ ନିଜକୁ କେତେମନ୍ତେ ଧନୀ କରିପାରିବା ।

ତୁମକୁ ଦେଖିବା ସମୟରୁ ହିଁ ଘ୍ରାଣ କରିପାରି ଜାଣିଛି ଯେ ତୁମେ ହାତକାଢ଼ି ଲେଖି ବସିଲେ କେତେ କ'ଣ ଲେଖିପାରିବ । ତେବେ, ପରୀକ୍ଷା ପରେ ପରେ ସେହି ପ୍ରୟୋଗଟି ଆରମ୍ଭ କରିଦିଅ ବୋଲି ମୁଁ ଆଗରୁ ମଧ୍ୟ ଲେଖିଥିଲି । ତୁମେ ଏପର୍ଯ୍ୟନ୍ତ ମୋ କଥା ରଖିଲ ନାହିଁ । ମୋ'କଥା ନ ରଖିଲ ନାହିଁ ପଛକେ, ନିଜ ଭିତରେ ଅପେକ୍ଷା କରି ରହିଥିବା ସମ୍ଭାବନାଗୁଡିକୁ ସ୍ୱୀକୃତି ଦେଇ ତୁମେ ଉଠି ପଡ଼, ନିଜକୁ

ଆବିଷ୍କାର କର, ସଂସାରରେ ନିଜର ଲେଖିବାର ମାଧ୍ୟମରେ ମିତ ହୋଇ ବାହାର । ଦେଖିବ, ସଂସାର ଭାରି ଭଲ ଲାଗିବ । ଯୁଆଡକୁ ଅନାଇବ, ଖାଲି ଆତ୍ମୀୟମାନଙ୍କୁ ହିଁ ପାଇବ । ଏହି ପୃଥିବୀ ଗୋଟାସୁଦ୍ଧା ନିଜର ଘରପରି ଲାଗିବ ।........

**ଭୁବନେଶ୍ୱର, ୨୦ ।୪ ।୯୬**

............ଏହି କେତେମାସ ଭିତରେ କ'ଣ ସବୁ ବହି ପଢ଼ିଛ ଯାହାକି ତୁମର ଭାବନାକୁ ସଚଳ କରାଇଛି । ତୁମେ ମନୋବିଜ୍ଞାନ ସମେତ ଯେତେ ଯାହା ପଢ଼ିବାକୁ ଇଚ୍ଛା କରୁଛ, ତାହା ସବୁକିଛି ତୁମକୁ ବିଶ୍ୱଭାରତୀ ଗ୍ରନ୍ଥାଗାରରେ ମିଳିବ । ତେଣୁ ନିଜକୁ ସଜ କର । 'ମୁଁ ପ୍ରସ୍ତୁତ ବୋଲି' ଭଗବାନଙ୍କ ପାଖରେ କହ । ଦେଖିବ, ବାଟ ଫିଟିଯିବ ।........

**ଭୁବନେଶ୍ୱର, ୧୦ ।୫ ।୯୬**

..........ତୁମକୁ କିଛି ଅର୍ଥରାଶି ମିଳିଲା, ତାହା ଅତ୍ୟନ୍ତ ଆନନ୍ଦର କଥା । ନିଜ ଘରେ ନିଜକୁ ଏକ ବୋଝ ବୋଲି କାହିଁକି ଭାବୁଛ ? ଯେଉଁ ଘର ଆମକୁ ବାଲ୍ୟକାଳରୁ ଆବଶ୍ୟକତା ମତେ ସବୁଦେଇଛି, ଆମେ ସେହି ଘରର ଜଣେ ହିସାବରେ ସମୟ ଆସିବା ମାତ୍ରକେ କିଛି ଦାୟିତ୍ୱ ମଧ୍ୟ ଗ୍ରହଣ କରିବା । ସଚରାଚର ଏହିପରି ହୁଏ । ତୁମେ ଅନ୍ୟପ୍ରକାର କାହିଁକି ଭାବୁଛ ?

ଗବେଷଣାର ବର୍ଷ ମଧ୍ୟ ବିଶ୍ୱଭାରତୀରେ ଜୁଲାଇଠାରୁ ଆରମ୍ଭ ହେଉଥିବ । ତେଣୁ, ସେଥିଲାଗି ଆଗରୁ ଆବେଦନ କରିବାକୁ ପଡୁଥିବ । ତୁମେ ତାହା କଲଣି କି ନାହିଁ କିଛି ସ୍ପଷ୍ଟ ଲେଖୁ ନାହଁ । ସାହିତ୍ୟ ଭଳି ବଙ୍କେଇ ବଙ୍କେଇ ସବୁ କହୁଛ । ବନ୍ଧୁ ପରି ତୁମେ ସିଧା କହିଲେ ବିଚରା ମୋତେ ସବୁ ଜାଣିବା କେତେ ସହଜ ହୋଇ ଯାଆନ୍ତା ।

ନିଜର ଗବେଷଣା ନିମନ୍ତେ ବିଷୟଟିଏ ଠିକ୍ କରିବ । ସେ ବିଷୟରେ ତୁମ ଅଧ୍ୟାପକମାନଙ୍କ ଠାରୁ ପରାମର୍ଶ ମଧ୍ୟ ଲୋଡିବ । ଔପଚାରିକ ଭାବରେ ତେଣୁ କୌଣସି ଗବେଷଣାସ୍ଥାନ ଠିକ୍ ହେବା ପୂର୍ବରୁ ମଧ୍ୟ ନିଜ ଶିକ୍ଷକମାନଙ୍କ ସହିତ ଏସବୁ ବିଷୟରେ ଅବଶ୍ୟ ପରାମର୍ଶ କରିହେବ ।

ଜୀବନ ଏଇଠୁ ଆରମ୍ଭ ହେଲା ବୋଲି ଜାଣିବ । ପୁସ୍ତକ ଓ ଅନୁଭବର ମହାସାଗର ଭିତରେ ଏଣିକି ସତକୁ ସତ ପ୍ରବେଶ କରିବ । ଇଂରାଜୀ, ବଙ୍ଗଳା,

ହିନ୍ଦୀ ଭିତରକୁ ମଧ୍ୟ ଅକାତର ଭାବରେ ପ୍ରବେଶ କରିବାର ସାମର୍ଥ୍ୟ ଅର୍ଜ୍ଜନ କରିବାକୁ ହେବ । ତୁମର ଏହି ସୁଯୋଗଟି ଦ୍ୱାର ଦେଶରେ ଆସି ଉପସ୍ଥିତ ହେବାକୁ ଯାଉଥିବା ସମୟରେ ମୁଁ ନିଜେ ଶାନ୍ତିନିକେତନରେ ଅତିବାହିତ କରିଥିବା ବର୍ଷଗୁଡିକ ଖୁବ୍ ମନେ ପଡୁଛି । ତୁମ ସହିତ ଏକାତ୍ମ ହୋଇ ପୁନର୍ବାର ସେଠାକୁ ଯାଉଥିବା ପରି ଅନୁଭବ ହେଉଛି ।

**ଭୁବନେଶ୍ୱର, ୨୩।୭।୯୬**

.........ଡକ୍ଟର ଶ୍ୟାମସୁନ୍ଦର ମହାପାତ୍ରଙ୍କ ପାଖରୁ ଚିଠି ପାଇ ତୁମକୁ ଲେଖୁଛି । ବିଶ୍ୱଭାରତୀ ଯିବା ସେଇ ଜାନୁଆରୀକୁ ରହିଲା । ତଥାପି, ଔପଚାରିକ ପତ୍ରଟି ନିର୍ଦ୍ଧାରିତ କର୍ତ୍ତାମାନଙ୍କ ଠାରୁ ପ୍ରାୟ ଗୋଟିଏ ମାସ ପରେ ଆସିବ ବୋଲି ସିଏ ଲେଖିଛନ୍ତି ।

ତାଙ୍କୁ ମୁଁ ଲେଖିଥିଲି, ସେଠାରେ ମୋତେ କ'ଣ ସବୁ କରିବାକୁ ହେବ ଅନ୍ୟ ସମସ୍ତଙ୍କ ସହିତ ପରାମର୍ଶ କରି ଜଣାଇବାକୁ, ତାଙ୍କର ଉକ୍ତିକୁ ଉଦ୍ଧାର କରୁଛି;

"ଆମେ ସାହିତ୍ୟର ଗବେଷଣା କରୁଥିଲେ ମଧ୍ୟ ତା'ର କେତେ ଆନୁଷଙ୍ଗିକ ବିଷୟ ସହ ଜଡିତ ହୋଇ ପଡୁଛୁ । ଧରନ୍ତୁ ଆମ ପିଲାଏ ଓଡ଼ିଆ ଉପନ୍ୟାସରେ ସମାଜତତ୍ତ୍ୱ ଅନ୍ୱେଷଣ/ବିଶ୍ଳେଷଣ କରୁଛନ୍ତି, କିନ୍ତୁ ସମାଜତତ୍ତ୍ୱ କ'ଣ ଜାଣନ୍ତି ନାହିଁ । ଗୋପୀନାଥଙ୍କ ନୃତାତ୍ତ୍ୱିକ ଉପନ୍ୟାସ ବୋଲି ଲେଖୁଛନ୍ତି, ନୃତତ୍ତ୍ୱ ଜାଣନ୍ତି ନାହିଁ । ଏଣୁ ଅନ୍ୟମାନଙ୍କ ସହ ପରାମର୍ଶ କରି ଆପଣଙ୍କ ପାଇଁ କେତୋଟି ବିଷୟ ବାଛି ରଖିଛି ; ୧) ଧର୍ମ ଓ ସାହିତ୍ୟ, ୨) ପ୍ରାଚ୍ୟ ଦର୍ଶନ ଓ ସାହିତ୍ୟ, ୩) ପାଶ୍ଚାତ୍ୟ ଦର୍ଶନ ଓ ସାହିତ୍ୟ, ୪) ମନସ୍ତତ୍ତ୍ୱ ଓ ସାହିତ୍ୟ, ୫) ନୃତତ୍ତ୍ୱ ଓ ସାହିତ୍ୟ, ୬) ସମାଜତତ୍ତ୍ୱ ଓ ସାହିତ୍ୟ, ଏବଂ ୭) (ଆପଣ ଯାହା ଯୋଡିବେ)

**ଭୁବନେଶ୍ୱର, ୨୧।୪।୯୭**

.........ମନୋବିଜ୍ଞାନ ଆଦିରେ ତୁମର ଶ୍ରଦ୍ଧାକୁ ସ୍ୱାଗତ କରୁଛି । ଅନ୍ତତଃ ଏହାରି ଦ୍ୱାରା ନିଜଭିତରୁ କିଛି ଦୁଆର ଖୋଲୁ । ନହେଲେ, ବାହାରେ ଭାଷାର ମିଛ ପିଚ୍‌କାରୀ ମାରି ଓ ଭିତରେ କିଳି ହୋଇ ରହି ନିଜର ଜୀବନଟା ଚାଲି ଯାଇପାରେ । ବର୍ତ୍ତମାନ ମୁଁ ଏହି କେତୋଟି ବହିର ନାମ ଦେଉଛି:

Woods Worth : Contemporary Schools of Psychology

Murphy : An Historical Introduction to Psychology

Bogardus : Development of Social Thought

Evans Pritchard : Social Anthropology

Fromm : Sigmund Freud's Mission

Fromm : Marr's Grapty of Man,

Fromm : Beyond the Chains of Illusion

Toynbee : Civilization on Trial

Sorokin : Reconstruction of Humanity

ବହିଟିଏ ପଢ଼ି କିଛି ଟିପି ରଖିବାକୁ ଇଚ୍ଛା ହୁଏ ନାହିଁ ?.......

**ଭୁବନେଶ୍ୱର, ୨୮ ।୧ ।୯୮**

.........ସେଠାରେ ବହି ଗୁଡାକୁ ଚଟାପଟ ଗିଳି ପକାଇବାକୁ ବେଳେ ବେଳେ ଇଚ୍ଛା ହେଉଛି ବୋଲି ଲେଖିଛ । ଭାରି ଆନନ୍ଦର କଥା । ଉଚିତ୍ ଜୀବାଣୁଟି ତୁମ ଭିତରେ ପ୍ରବେଶ କରୁଥିବାପରି ଲାଗୁଛି । ଅସଲ ବେଗଟି ମଣିଷ ନିଜ ଭିତରୁ ହିଁ ପାଏ । ପରିସ୍ଥିତି ଯେତେ ଅନୁକୂଳ ହୋଇଥିଲେ ମଧ୍ୟ ସିଏ ତା'ପରେ କିଛି ମାନେ ନାହିଁ । ନିଜ ଭିତରକୁ ବାଟ ମିଳିଯାଏ । ଜଣେ ବ୍ୟକ୍ତିର ଜୀବନରେ ସେହି ମୁହୂର୍ତ୍ତଟି ଆସି ପହଞ୍ଚିଲେ ସିଏ ତରିଯାଏ, ଉତୁରି ଯାଏ । ମୁଁ କେତେ ବିଶ୍ୱାସର ସହିତ ଅପେକ୍ଷା କରିଛି, ତୁମକୁ ଦ୍ୱିଜ ରୂପରେ ଦେଖିବି । ତା'ପରେ ମନେ ମନେ ତୁମକୁ କାନ୍ଧ ଉପରେ ବସାଇ ବୁଲିବି । ମୋ କଥାକୁ ହସି ଉଡାଇଦେବ ନାହିଁ । ମୋ' ରାଣ । ମୁଁ କାହିଁକି ଏପରି କହୁଛି, ଚିନ୍ତା କରିବ ।

କୌଣସି ବହି ପଢ଼ି ତୁମେ ଲେଖକଙ୍କ ସହିତ ଏକମତ ହେଲ କି ନ ହେଲ, ସେ କଥା କ'ଣ ପାଇଁ ଭାବିବ ? ଆମେ ସଂଗ୍ରହ କରିବା ଓ ନିଜର ପଥଚର୍ଯ୍ୟାରେ ତାକୁ କାମରେ ଲଗାଇବା । ଅସୁରପରି ଜ୍ଞାନର ସରଞ୍ଜାମ ଗୁଡ଼ିକୁ ଗିଳିଯାଉଥିବା । ଭିତରେ ପରିପାଚନ କରୁଥିବା ଜୀବନ ବିଧାତା ତା'କୁ ଉଚିତ୍ ଭାବରେ ଆମର ଏକ ନିଜସ୍ୱ ରସରେ ପରିଣତ କରିଦେଉଥିବ । ବଙ୍ଗଳା ଭାଷାକୁ ପକ୍କା କରିନିଅ । ଯେପରିକି ଘଣ୍ଟାକୁ ୬୦/୭୦ ପୃଷ୍ଠା ପଢ଼ିପାରିବ । ଇଂରାଜୀ ବହି ପଢ଼ାରେ ମଧ୍ୟ କ୍ରମେ ସେହି ବେଗ ଆସିପାରିବା ଉଚିତ୍ । ଆମଦ୍ୱାରା ସବୁସମ୍ଭବ ହେବ, ଯଦି

ଆମେ ନିଜକୁ ସୃଷ୍ଟି କର୍ତ୍ତାଙ୍କର ଏକ ଯନ୍ତ୍ର ବୋଲି ଅନୁଭବ କରୁଥିବା । ସେହି ଯନ୍ତ୍ର ହୋଇପାରିବା ହେଉଛି ସର୍ବବୃହତ୍ ସାର୍ଥକତା, ଆମ ଜୀବନରେ ସବୁକିଛି ଖୁସୀର କାରଣ ।..........

**ଭୁବନେଶ୍ୱର, ୫ ।୧୦ ।୦୧**

..........ମୁଁ ବହୁତ ଥର କହିଛି, ସମ୍ମୁଖରେ ସମସ୍ତ ଜୀବନ ପଡିଛି । ବହୁତ ବହୁତ କର୍ମର ଆହ୍ୱାନ ଅପେକ୍ଷା କରି ରହିଛି । ଆମେ ସେଥିପାଇଁ ଅଧିକରୁ ଅଧିକ ଟାଣ ହୋଇ ପ୍ରସ୍ତୁତ ହେବା । ସମସ୍ତେ ଯେ ଗୋଟିଏ ପ୍ରକାରେ ପ୍ରସ୍ତୁତ ହେବେ ସେ କଥା ମୋଟେ ନୁହେଁ । ତୁମ ବାଟ ମଧ୍ୟ ତୁମେ ବାଛିବ ଏବଂ ସେହି ଅନୁସାରେ ପ୍ରସ୍ତୁତ ହେବ । ପ୍ରତ୍ୟେକ ଚିଠିରେ ମୋତେ ତାହାରି କିଛି କିଛି ସମ୍ବାଦ ଦେଉଥିବ । ମୁଁ ଶୁଣୁଥିବି ଓ ଖୁସୀ ହେଉଥିବି ।

**ଭୁବନେଶ୍ୱର, ୨୬ ।୧୦ ।୦୧**

(........କେତେ ଭଲ କଥା ଯେ ତୁମେ ଅଧ୍ୟୟନକୁ ଫେରି ଆସିବାକୁ ମନସ୍ଥ କରିଛ । ଆଉ ଯାବତୀୟ ସବୁ ଚାଲିଥାଉ, ଅଧ୍ୟୟନରେ ମଧ୍ୟ ଚାଲିବା ବନ୍ଦ ନହେଉ । ଦେଶରେ ତ ଅନେକ ତରୁଣଙ୍କର ପ୍ରୟୋଜନ ରହିଛି, ଯେଉଁମାନେ କୌଣସି କାର୍ଯ୍ୟକୁ ପଛଉ ନଥିବେ, ଏବଂ ଅଧ୍ୟୟନ ଜାରି ରଖିଥିବେ ।...........)

## ମାନସ ରଞ୍ଜନ ମିଶ୍ର

**ଭୁବନେଶ୍ୱର, ୫ ।୬ ।୮୯**

........ହଁ, ଆନ୍‌ଡରସନ୍ ଡ଼େନ୍‌ମାର୍କର ଲେଖକ । ସେ ଡେନିଶ ଭାଷାରେ ଲେଖିଛନ୍ତି । ମୁଁ ଡେନ୍‌ମାର୍କର କୋପେନହେଗେନ୍ ବିଶ୍ୱବିଦ୍ୟାଳୟରେ ପଢୁଥିଲି । ସେଠାରେ ଇଂରାଜୀ ଚଳେ ନାହିଁ, ଡେନିଶ୍‌ରେ ପାଠ ପଢ଼ାଯାଏ, ଡେନିଶ୍‌ରେ ପରୀକ୍ଷା ଦେବାକୁ ପଡେ । ସେହି କାରଣରୁ ମୁଁ ଡେନିଶ୍ ଭାଷା ଶିଖିଲି । କ୍ରମେ ତାହା ମୋର ମାତୃଭାଷା ପରି ହୋଇଗଲା । ମୋଟେ କଷ୍ଟ ଲାଗିଲା ନାହିଁ ।

ତୁମେ ବି ବଡ଼ ହୋଇ କେତେ ଭାଷା ଶିଖିବ, କେତେ ପାଠ ପଢ଼ିବ, ଏଇ ପୃଥିବୀରେ କେତେ କ'ଣ କରି ଦେଖାଇ ଦେବ । ଖୁସି ରହିଲେ ସବୁକିଛି ସହଜ ହୋଇଯିବ । ତୁମର ଉନ୍ନତି ଦେଖି ମୁଁ ମଧ୍ୟ ଦୂରରୁ ଥାଇ ଖୁସି ହେଉଥିବି ।

**ଭୁବନେଶ୍ୱର, ୧୧ ।୯ ।୮୯**

............ତୁମର ଚିଠି ପାଇଛି । ମୋ'ଠାରୁ ଚିଠି ଆସିଛି ଶୁଣୁ ଶୁଣୁ ତୁମେ ବହେ ନାଚିଗଲ ବୋଲି ପ୍ରମାଣିତ ହୋଇଗଲା । ଏଣିକି ଆମେ କେବଳ ଖୁସୀ ହୋଇ ପରସ୍ପର କଥା ଭାବିବା । ଜଣେ ଆଉ ଜଣକୁ କେବେହେଲେ ଭୁଲ ବୁଝନ୍ତି ନାହିଁ । ସେମାନେ ଗୋଟାସୁଦ୍ଧା ଭିତରକୁ ପଶି ଯାଇଥାନ୍ତି । ତେଣୁ, ଉପରୁ ଦେଖି ମୋଟେ ଗୋଟାଏ ମତ ତିଆରି କରି ନିଅନ୍ତି ନାହିଁ । ଉପରେ ଉପରେ ଦେଖୁଥିବା ମଣିଷମାନେ ଭୁଲ ବୁଝନ୍ତି, ରାଗନ୍ତି, କପଟକରନ୍ତି, ଇତ୍ୟାଦି, ଇତ୍ୟାଦି । ଆମେ ଆଉ ଏପରି କରିବା ନାହିଁ ।

ମୋଟେ ସାଢ଼େ ଚାରିମାସ ତଳେ ବ୍ରହ୍ମପୁରରେ ତୁମେ କେତୋଟି ପ୍ରଶ୍ନ ନେଇ ମୋ' ପାଖକୁ ଆସିଥିଲ । ତୁମ ସହିତ ଜଣା ନଥିଲା କି ଚିହ୍ନା ନଥିଲା, ସେହି ପ୍ରାୟ ଘଣ୍ଟାକର କଥାବାର୍ତ୍ତାରେ ଆମ ଦୁହିଁଙ୍କ ଭିତରେ କେତେ କ'ଣ ସମ୍ବନ୍ଧ ଯୋଡ଼ି ହୋଇଗଲା । ଆଶ୍ଚର୍ଯ୍ୟ ଲାଗୁନାହିଁ ? ମାତ୍ର ଏଥିରେ ଆଶ୍ଚର୍ଯ୍ୟ ହେବାର ଆଦୌ କିଛି ନାହିଁ । ମଣିଷମାନେ ପ୍ରସ୍ତୁତ ହେଲେ ସବୁ ସମ୍ଭବ ହୋଇ ଯାଏ । ପ୍ରସ୍ତୁତ ନ ହୋଇଥିଲେ କିଛି ସମ୍ଭବ ହୁଏ ନାହିଁ ।

ତୁମେ ନୂତନ ଉତ୍ସାହରେ ନୂଆ ଧାରାରେ ପାଠ ପଢ଼ା ଆରମ୍ଭ କରିଦେଲଣି । ତାହାହିଁ ସବୁଠାରୁ ବଡ଼ କଥା । କେହି ବୋଲ ବତାଇବାକୁ ନ ଥିବେ, ଉପଦେଶ ବା ଆଦେଶ ଦେବାକୁ ନଥିବେ, ତଥାପି ଆମର ସବୁ କାମ ଆମେ କରିଯାଉଥିବା, ଖାଲି ଖୁସୀ ହୋଇ କରିଯାଉଥିବା, ପ୍ରତିଦିନ ଜୀବନରୁ ନୂଆ ନୂଆ ସୁଆଦ ଲାଭ କରୁଥିବା, ସବୁଠାରୁ ଅଧିକ ମଜା ଏଇଥିରୁ ମିଳେ । କେବେହେଲେ ବେଜାର ଲାଗେ ନାହିଁ ।............

**ଭୁବନେଶ୍ୱର, ୨୪ ।୧୧ ।୮୯**

.....ଧ୍ୟାନ ପାଇଁ ପଣ୍ଡିଚେରୀ ଆଶ୍ରମରେ ଏକ ନିର୍ଦ୍ଦିଷ୍ଟ ସମୟ ରହିଛି । ଯେଉଁଠି ଏକତ୍ର ଏତେଲୋକ ବାସ କରୁଛନ୍ତି, ସେଠାରେ ସମବେତ ଧ୍ୟାନ ପାଇଁ ଏକ ନିର୍ଦ୍ଧାରିତ ସମୟ ରହିବା ଆବଶ୍ୟକ ହୋଇଥାଏ । ଘରେ ଆମେ ଇଚ୍ଛା କଲେ ଠିକ୍ ସମୟରେ ଧ୍ୟାନ ମଧ୍ୟ କରିପାରୁ, ବା ନିଜର ସୁବିଧାମୁତାବକ ଅନ୍ୟ ସମୟ ମଧ୍ୟ ରଖିପାରୁ । ମଣିଷ ଭିତରୁ ନୀରବ ଓ ଖୁସି ହୋଇ ଆସିଲେ, ତାହାହିଁ ତ ଧ୍ୟାନ । ଏ ବିଷୟରେ

କେବେ ପୁଣି ମିଶିଲେ ମୁଁ ସରଳ ଭାଷାରେ ଆହୁରି କେତେକ କଥା ବୁଝାଇଦେବି ।
ତୁମେ ମନେ କରି ପଚାରିବ ।.........

**ଭୁବନେଶ୍ୱର, ୧୦ ।୧ ।୯୦**

.........ଭଗବାନଙ୍କୁ ପାଇବାର ଉପାୟ କ'ଣ ଓ ସେ ଅନ୍ୟ ଏକ ରୂପରେ ପୃଥିବୀକୁ ଆସିଲେ ଆମେ ତାଙ୍କୁ କିପରି ଚିହ୍ନିବା ବୋଲି ତୁମେ ପ୍ରଶ୍ନ କରିଛ । ଏହାର ଉତ୍ତର ଦେବା ପୂର୍ବରୁ ମୁଁ ତୁମକୁ ଗୋଟିଏ ପ୍ରଶ୍ନ କରିବି, ଭଗବାନ ପୃଥିବୀ ବାହାରେ କେଉଁଠି ଥାଆନ୍ତି ବୋଲି ଭାବୁଛ ? ପ୍ରଶ୍ନଟିର ଉତ୍ତର ପାଇଲେ ମୁଁ ତୁମ ପ୍ରଶ୍ନର ଉତ୍ତର ଦେବି ।

ତୁମେ ମୋର ଅନେକ ଅନେକ ସ୍ନେହ ଜାଣିବ । ଖୁସୀ ହୋଇ ପାଠ ପଢ଼ିବ, ସର୍ବଦା ଖୁସୀ ହୋଇ ରହିଥିବ । ତୁମ ଭିତରେ ଫୁଲଟିଏ ଫୁଟିଥିଲା ପରି ଅନୁଭବ କରିବ । ତେବେ ଅସମ୍ଭବକୁ ମଧ୍ୟ ସମ୍ଭବ କରିପାରିବ ।..........

**ଭୁବନେଶ୍ୱର, ୨୧ ।୨ ।୯୦**

........ଯାହାର ଅତିପ୍ରିୟ ବୋଲି ସତକୁ ସତ କେହି ଥାଏ, ତା'ର ଦେହ ଖରାପ ହେବା ମଧ୍ୟ ଏକ ବିଶେଷ ସୁଯୋଗ ବୋଲି ଲାଗନ୍ତା । ସିଏ ତ ସ୍କୁଲକୁ ଯାଇପାରୁ ନଥାନ୍ତା, ଅନ୍ୟ କୌଣସି କାମ କରିପାରୁ ନଥାନ୍ତା, ତେଣୁ ସମ୍ଭବ ହେଲେ ତା'ର ଅତିପ୍ରିୟ ବ୍ୟକ୍ତିପାଖକୁ ଦିନେ ଛାଡି ଦିନେ ଚିଠି ଲେଖି ପଠାଇ ଦେଉଥାନ୍ତା ଯେ, ତା'ର ଗରମ ଓ ଥଣ୍ଡା ଉଭୟ ପ୍ରକାରର ଘାଆ ତାକୁ ଛାଡି କୁଆଡେ ପଳାଇଯାଆନ୍ତେ ।

ମାତ୍ର, ଅସଲ କଥା ହେଉଛି, ତୁମର ଏସବୁ ଅସୁସ୍ଥତା ହେବ କାହିଁକି ? ସଂସାରରେ ପ୍ରକୃତରେ ଅତିପ୍ରିୟ ଲୋକ ଯାହାର ଅଛି, ତା'ଦେହ କଦାପି ଖରାପ ହେବ ନାହିଁ । ବ୍ରହ୍ମପୁରରେ ମୋର ଜଣେ ଅତପ୍ରିୟ କୁନି ବନ୍ଧୁଟିଏ ଅଛି ବୋଲି ମୋ ଭିତରକୁ କୌଣସି ଅସୁସ୍ଥତା ପଶି ପାରୁନାହାନ୍ତି । କାହାର ପ୍ରିୟ ହୋଇ ପାରିଲେ କାହାରିକୁ ଅତିପ୍ରିୟ କରି ପାରିଲେ ଭିତରୁ ଯେଉଁ ବଳ ମିଳେ, ଯେଉଁ ଖୁସୀ ଆସେ, ତାହା ଆଗରେ ସମସ୍ତେ ପରାସ୍ତ ହୋଇଯାଆନ୍ତି । ତୁମେ ଆଉ ଟିକିଏ ବଡ଼ ହୁଅ, ମୁଁ ତୁମକୁ ଏପରି ବାଗ ବତାଇଦେବି ଯେ ତୁମର ଦେହ ଆଦୌ ଅସୁସ୍ଥ ହେବ ନାହିଁ । ଏବଂ ବର୍ତ୍ତମାନ ଖାଲି ଖୁସୀ ହୁଅ । କେବଳ ମନ ନୁହେଁ ତୁମର ଦେହ ମଧ୍ୟ ଖାଲି ଖୁସୀରେ ଝଳ ଝଳ ହୋଇ ରହିଥାଉ ।

ବଡ଼ମାନଙ୍କୁ ମୋଟେ ଅନୁକରଣ କରିବାକୁ ମନ କର ନାହିଁ । ସେଇଥିରୁ ସବୁଯାକ ଅଡୁଆ ଆସି ପହଞ୍ଚିବ ।

ତୁମକୁ ଅତି ଆପଣାର ବୋଲି ଚିହ୍ନିପାରିବା ପରେ ତୁମକୁ ମୁଁ କ୍ରମେ କଡ଼ା କଥା କହିବାକୁ ମଧ୍ୟ ଆରମ୍ଭ କରିଦେଲିଣି । ଆପଣାର ଲୋକକୁହିଁ କଡ଼ା କଥା କହିହୁଏ, କାରଣ ଭିତରେ ପରସ୍ପରକୁ ବୁଝିବାର ଡୋରିଟି ଦୃଢ଼ ହୋଇରହିଥାଏ । ମୋର କଡ଼ା କଥାରେ ତୁମେ ଭିତରେ ଦୁଃଖିତ ହୋଇ ପଡୁନାହିଁ ତ ? ମୁଁ କାହାର ସମ୍ପତ୍ତି, ମୋ' ଉପରେ କାହାର କେତେ ଅଧିକାର, ସେ କଥା ମୁଁ ନିଜେ ଜାଣି ନାହିଁ । ଏଗୁଡାକ ମୁଁ କେବେହେଲେ ମାପିବାକୁ ଚେଷ୍ଟା କରିନାହିଁ । ଉଲାଖ ଲୋକମାନେ ମାପନ୍ତି, ତୁଳନା କରନ୍ତି, - ସେଇଥିରୁ ସୁଖ ଓ ଦୁଃଖ ପାଆନ୍ତି । ଚିତ୍ତଭାଇ ଓ ମାନସ ଏମାନେ କେବେ ଉଲାଖ ହେବେ ନାହିଁ । ଆମେ ଏଠି ସଂସାରରେ ଆହୁରି କେତେ କେତେ ଅନ୍ୟ କାମ କରିବାକୁ ନିଜକୁ ତିଆରି କିରବା, ଉଲାଖ ଲୋକମାନଙ୍କୁ ଉଲାଖ ହେବାକୁ ଛାଡିଦେବା ।

ପରୀକ୍ଷା ପାଇଁ ମଧ୍ୟ ଖୁସୀ ହୋଇ ପ୍ରସ୍ତୁତ ହୁଅ । ନମ୍ବର ଅଧିକ ଆଣିବାର ଚିନ୍ତାର ଛାନିଆ ହୁଅ ନାହିଁ ।.......

**ଭୁବନେଶ୍ୱର, ୨୪ ।୭ ।୯୨**

.........ତୁମର ପରୀକ୍ଷା ଫଳ ଆଦୌ ଖରାପ ହୋଇନାହିଁ । ଗଣିତରେ ଭଲ ନମ୍ବର ରଖିଥିଲେ କେତେ ଅଧିକ ଭଲ କରିଥାନ୍ତ । ବିଷୟ ଅନୁସାରେ କେଉଁଥିରେ କେତେ ନମ୍ବର ପାଇଛ ଲେଖିବ । ଅଷ୍ଟମଶ୍ରେଣୀରେ ବୀଜଗଣିତ ପଢ଼ାହେବ, ତାହାକୁ ଭଲ କରି କ୍ଲାସ୍‌ରେ ବୁଝିବ ଓ ଘରେ ଉଦାହରଣ ମାଳାରୁ ଅଙ୍କସବୁ କରି ପକାଉଥିବ । ମାତ୍ର, ଇଂରାଜୀ ଉପରେ ଜୋର୍ ଦେବ, ଇଂରାଜୀ ଟ୍ରାନ୍‌ସ୍‌ଲେସନ୍ ଓ ଗ୍ରାମାର କରିବ । ନାନୀମାନେ ସଂଶୋଧନ କରି ଦେଉଥିବେ । ନବମ ଶ୍ରେଣୀକୁ ଗଲା ସମୟକୁ ତୁମର ଇଂରାଜୀ ଓ ଗଣିତ ଯେପରି ପକ୍କା ହୋଇଯାଇଥିବ ।.........

**ଭୁବନେଶ୍ୱର, ୪ ।୯ ।୮୯**

......ବାଲାଜୀ ସହିତ ପ୍ରତିଯୋଗିତା କରିବା ତୁମ ଜୀବନର ଲକ୍ଷ୍ୟ ନୁହେଁ । ତେଣୁ ତା'ପାଖକୁ ମୁଁ ଦେଇଥିବା ଚିଠି ପଢ଼ି ତୁମ ମନରେ ଦୁଃଖ ହେବ କାହିଁକି ? ଆମ ନିଜ

ବାଟରେ ଆମେ ଖୁସୀ ମନରେ ଅଧିକ ଓ ଆହୁରି ଅଧିକ ଅଗ୍ରସର ହୋଇ ରହିଥିବା, ଆମ ଜୀବନର ଅସଲ ଲକ୍ଷ୍ୟ ତାହାହିଁ ହେବା ଉଚିତ୍ । ଆମର ପରିଚିତ ସମସ୍ତେ ମଧ୍ୟ ସେମାନଙ୍କ ବାଟରେ ଆଗକୁ ଓ ଆହୁରି ଆଗକୁ ଚାଲୁଥାନ୍ତୁ, ସେମାନଙ୍କ ଲାଗି ଆମ ହୃଦୟରେ ସର୍ବଦା ଏହି ସ୍ୱାଭାବିକ ପ୍ରାର୍ଥନାଟି ରହିଥିବା ଉଚିତ । ଏହି ପ୍ରାର୍ଥନାରୁ ଆମ ନିଜକୁ ମଧ୍ୟ ଖୁବ୍ ଉତ୍ସାହ ମିଳିବ ।

ତୁମର ପରୀକ୍ଷାନମ୍ବର ଗୁଡିକ ଦେଖିଲି । ଦୁଃଖ କରିବାର କୌଣସି କାରଣ ନାହିଁ । ତୁମର ଭିତରଟା ମଧ୍ୟ ମୋତେ ଜଳଜଳ ଦିଶୁଛି, ତେଣୁ ମୁଁ ମୋଟେ ଦୁଃଖ କରିବି ନାହିଁ । ମାତ୍ର, ଇଂରାଜୀ ଓ ଓଡ଼ିଆରେ କିଛି ବିଶେଷ ଉଦ୍ୟମ ଦରକାର ହେବ । ଗଣିତରେ ଏବେ ୭୫ ଅଛି, କାଲିକୁ ୯୦/୧୦୦ ହୋଇପାରିବ । ତୁମେ ଇଂରାଜୀ ବହିର ପ୍ରତ୍ୟେକ ବିଷୟ ପଢ଼ାହୋଇ ସାରିବା ପରେ ସେଥିରେ ଥିବା ପ୍ରଶ୍ନଗୁଡିକର ଲିଖିତ ଉତ୍ତର କରି ପକାଉଥିବ । ସଂଶୋଧନ କରିବାକୁ କେହି ନ ମିଳିଲେ ମୁଁ ନିଜେ ସେଠାରେ ଥିବାବେଳେ ସଂଶୋଧନ କରିଦେବି । ଓଡ଼ିଆ ଲାଗି ଜୟଶ୍ରୀ ନାନୀ ତୁମକୁ ବାଟ ବତାଇ ଦେବେ । ତାଙ୍କୁ କହିବ, ସେ ଗୋପବନ୍ଧୁ ଦାଶଙ୍କର ତିନୋଟି ଯାକ କବିତା ବହି ଆଣି ତୁମକୁ ଯୋଗାଇଦେବେ । ସେଗୁଡିକ ପଢ଼ି ସାରିବାପରେ ତୁମେ କବିତା ଗୁଡିକ ବିଷୟରେ ନିଜର ମତାମତ ଲେଖି ମୋତେ ଜଣାଇବ । ମୁଁ ତାହା ପଢ଼ି ପୁଣି କ'ଣ କରିବାକୁ ହେବ କହିଦେବି ।.........

## ମୀରା ପାଢ଼ୀ

### ଭୁବନେଶ୍ୱର, ୧୬ ।୩ ।୯୪

..........ଗତ ୧୩ ତାରିଖ ରବିବାରଦିନ ଓଡ଼ିଶାର ତିନୋଟି ଜାଗାରେ ଶ୍ରମଶିବିରର ପୁରୁଣା ବନ୍ଧୁମାନେ ଏକତ୍ର ହୋଇଥିବେ । ଆମ ପାଖରୁ ଆମେ ପୁରୀରେ ମିଳିତ ହୋଇଥିଲୁ । ପ୍ରଧାନ ବିଷୟ ହିସାବରେ ଆଗାମୀ ଶିବିର ସମ୍ବନ୍ଧରେ ହିଁ କଥା ପଡିଲା । ସେମାନଙ୍କୁ ମୁଁ ମଶାରୀ କଥା କହିଲି । ପ୍ରତ୍ୟେକ ବ୍ୟକ୍ତି ଯଦି ମଶାରୀ ଟାଙ୍ଗିବା, ତେବେ ୨୫୦ଜଣ ମଶାରୀ ଖଟାଇ ଶୋଇବା ଲାଗି ସେଠାରେ ଯଥେଷ୍ଟ ସ୍ଥାନ ଅଛିକି ? ଅବଶ୍ୟ ଗୋଟାଏ ବଡ଼ ମଶାରୀରେ ଦୁଇତିନିଜଣ ଶୋଇଯାଇପାରିଲେ ତାହା ଅନ୍ୟ କଥା ହେବ । ପଙ୍ଖା ତ ଅଛି, ବୋଧହୁଏ ମଶାମାନେ ବେଶୀ ଉପଦ୍ରବ କରିବେ ନାହିଁ । ପୁରୀରେ ବନ୍ଧୁମାନେ କହିଛନ୍ତି ଯେ ସେମାନେ ମଶାରି ସାଙ୍ଗରେ

ନେଇଯିବେ । ଆବଶ୍ୟକ ହେଲେ ଖଟାଇବେ । ନଚେତ୍ ତାହାକୁ ତକିଆରୂପେ ବ୍ୟବହାର କରିବେ ।

ପ୍ରତ୍ୟେକ ଶିବିରରେ ୫୦ରୁ ଉପର ଅପାଭାଇ ହୁଅନ୍ତି । ତୁମେମାନେ ସବାଆଗ ସେହିମାନଙ୍କର ଆବଶ୍ୟକତା ପୂରଣ କରିବାକୁ ଚେଷ୍ଟା କରିବ । ସେମାନଙ୍କର ରହିବା, ଝାଡ଼ା ଓ ପରିସ୍ରା ଯିବା, ଗାଧୋଇବା ଇତ୍ୟାଦି । ଭାଇମାନେ ଯେ କୌଣସି ପରିସ୍ଥିତିରେ ମଧ୍ୟ ଚଳିଯିବେ । ସମସ୍ତଙ୍କର ଶୌଚଲାଗି ହତାଭିତରେ ସୁବିଧା ନଥିଲେ ମଧ୍ୟ ବାହାରକୁ ଯାଇ ପାରିବେ । ସେଥିଲାଗି ଯଥେଷ୍ଟ ସଂଖ୍ୟାରେ ମଗ୍ ଓ ବାଲ୍‌ଟି ଥିଲେ ହେଲା । ତଥାପି, ହତା ଭିତରେ ୨/୩ଟି ଅସ୍ଥାୟୀ ବରପାଲି ପାଇଖାନା ପକାଇ ଦେଇଥିବ ଓ ଗୋଟିଏ ବା ଦୁଇଟି ପରିସ୍ରାଗାରର ବ୍ୟବସ୍ଥା କରିବ ।

ଖରାଦିନ । ପିଇବା ପାଣିର ବ୍ୟବସ୍ଥା ପକ୍କା ହେବା ଉଚିତ୍ । ପ୍ରତ୍ୟେକ କୋଠରୀରେ କଳସୀ ଓ ଗ୍ଲାସ୍‌ର ବ୍ୟବସ୍ଥା କରିବ । ପାଣି ଭରିବା କାମ ତ ଆମେ ଶିବିରାର୍ଥୀମାନେ କରିବୁ । ହଁ, ବାହାରେ ଲୁଗା ଶୁଖାଇବା ନିମନ୍ତେ ଦଉଡି କେତୋଟି ଟାଙ୍ଗି ଦେଇଥିବ । ନହେଲେ, ଭାଇମାନେ ରହିବା ଘରେ ହିଁ ଓଦା ଲୁଗା ଶୁଖାଇବେ ଓ ତଦ୍ଦ୍ୱାରା ଭାରି ଅଡୁଆ ଲାଗିବ ।

ପ୍ରତ୍ୟେକ ଦିନ ୪ଘଣ୍ଟା ହିସାବରେ ଦଶଦିନ ଯାଏ ଯଥେଷ୍ଟ ଶ୍ରମର ବ୍ୟବସ୍ଥା ତୁମେମାନେ ଆଗରୁ ସ୍ଥିର କରିଥିବ । ସେଥିଲାଗି ଆବଶ୍ୟକ ଉପକରଣ ମଧ୍ୟ ଯୋଗାଡ଼ ହୋଇ ରହିଥିବ । ଅଧ୍ୟୟନ ନିମନ୍ତେ ପ୍ରଶସ୍ତ ଜାଗାଟିଏ ଥିବ, ଯେଉଁଠାରେ ସମସ୍ତେ ଏକାଠି ବସି ପାରିବେ । ସମସ୍ତେ ଶୁଣିପାରିବା ପାଇଁ ହୁଏତ ମାଇକ୍ ଲୋଡା ହୋଇପାରେ । ଖୋଲା ଜାଗାରେ ଛାଇ ହୋଇଥିଲେ ତାହା ସର୍ବୋତ୍ତମ ହେବ । ରାତି ଆଲୋଚନା ନିମନ୍ତେ ମଧ୍ୟ ସେହିପରି ବଡ଼ ଜାଗାଟିଏ ଦରକାର ହେବ । ଲାଇନ୍ ଯଦି ଚାଲିଯାଉଥାଏ, ତେବେ ବିକଳ୍ପ ଆଲୁଅର କିଛି ବ୍ୟବସ୍ଥା କରିଥିବ ।

ଆମର କୌଣସି ଶିବିରରେ ଦଶ ବର୍ଷ ଭିତରେ କିଛି ଅସୁବିଧା ହୋଇନାହିଁ, ଯେକୌଣସି ଅବସ୍ଥାରେ ମଧ୍ୟ ବନ୍ଧୁମାନେ ଚଳାଇ ନେଇଛନ୍ତି । ଏଥର ମଧ୍ୟ ସେହି କଥା ହେବ ।..........

ଭୁବନେଶ୍ୱର, ୪।୮।୯୪

............ସେଠାରେ ପିଲାମାନେ ଆସିଗଲେଣି ଓ ନିୟମିତ ଶିକ୍ଷାକେନ୍ଦ୍ର କାର୍ଯ୍ୟ ଆରମ୍ଭ ହୋଇଗଲାଣି ବୋଲି ଜାଣି ଖୁସୀ ହେଲି । ପୂର୍ବତନ ଅଧ୍ୟକ୍ଷ ଚାଲିଯିବା

ବିଷୟରେ ମୁଁ ଆଉ କ'ଣ ମତ ଦେଇଥାନ୍ତି ? ମୁଁ ତ ତାଙ୍କୁ ଆଦୌ ଜାଣି ନଥିଲି । ଏହିପରି କେତେ ଆସୁଥିବେ ଓ କେତେ ଯାଉଥିବେ । ଯେଉଁମାନଙ୍କ ଠାରୁ ଯେତିକି ସାହାଯ୍ୟ ମିଳିଲା, ଆମେ ସେଥିଲାଗି ସେମାନଙ୍କ ପାଖରେ ଅବଶ୍ୟ କୃତଜ୍ଞ ରହିବା । ଦୁଃଖ କରିବା ନାହିଁ ।..........

**ଭୁବନେଶ୍ୱର, ୧୫ ।୧୧ ।୯୪**

........ତୁମେ ପଠାଇଥିବା ମାତୃବାଣୀଟିର ଓଡ଼ିଆ ହେଉଛି; "ଆମେ ସବୁ ତାଙ୍କରି ସମ୍ମୁଖରେ ଦଣ୍ଡାୟମାନ ହୋଇଛୁ, ଯିଏ କି ଅଧିକ ସମ୍ପୂର୍ଣ୍ଣ ଭାବରେ ତାଙ୍କର ରୂପାନ୍ତର କାର୍ଯ୍ୟଟିକୁ ସାହାଯ୍ୟ କରିପାରିବେ ବୋଲି ନିଜର ଜଡ଼ ଶରୀରକୁ ତ୍ୟାଗ କରିଛନ୍ତି ।

"ସେ ନିରନ୍ତର ଆମ ସହିତ ରହିଛନ୍ତି, ଆମେ ଯାହା କିଛି କରୁଛୁ, ଯାହା କିଛି ଚିନ୍ତା କରୁଛୁ, ଅନୁଭବ କରୁଛୁ କିମ୍ବା କାର୍ଯ୍ୟ କରୁଛୁ, ସେହି ସକଳ ବିଷୟରେ ସେ ସଜ୍ଞାନ ରହିଛନ୍ତି ।".............

**ଭୁବନେଶ୍ୱର, ୨୯ ।୧୨ ।୯୭**

......ମାମାର ଚିଠି ପାଇଥିଲି । ସ୍କୁଲରେ ପାଠ ପଢ଼ା ହେଉନାହିଁ ବୋଲି କ'ଣ ଆମେ ଅଭିମାନ କରି ନିଜ ପାଖରେ ଅବହେଳା କରିବା ? ମୋ ତରଫରୁ ତୁମେ ତାକୁ ବୁଝାଇଦେବ । ବିଦ୍ୟା ଅର୍ଜନ କରିବା ସର୍ବପ୍ରଥମ ଆମ ନିଜର ଦାୟିତ୍ୱ । ତେଣୁ, ସେ ସ୍ୱୟଂ ଏଥର ତା'ର କର୍ତ୍ତବ୍ୟ କରୁ । ଦେହ ମଧ୍ୟ ଅସୁସ୍ଥ ହେବା ଉଚିତ୍ ନୁହେଁ । ସିଏ ନିଜ ମୂଳଦୁଆଟିକୁ ଟାଣ କଲେ ସିନା ବଡ଼, ହୋଇ ମଜବୁତ ଭାବରେ ଛିଡ଼ା ହୋଇପାରିବ ଓ ବଡ଼ ବଡ଼ ଦାୟିତ୍ୱ ଗ୍ରହଣ କରିପାରିବ ?.........

## ଯୁଗୋଳ କିଶୋର ସାହୁ

**ଭୁବନେଶ୍ୱର, ୧୫ ।୩ ।୮୯**

........ପ୍ରତ୍ୟେକ ରବିବାର ହାତୀବାବୁଙ୍କ ସହିତ କିଛି ସମୟ କଟେ । ସେତେବେଳେ ଆପଣଙ୍କ କଥା ପଡେ । ବ୍ରହ୍ମପୁର କଥା ମଧ୍ୟ ପଡେ । ଆପଣମାନେ ସେଠାରେ ଯେ କ୍ରମଶଃ ଘନିଷ୍ଠତାର ଏକଚକ୍ର ଗଢ଼ି ଆଣିଲେଣି, ତାହା ପ୍ରକୃତରେ ଅତୀବ ଆନନ୍ଦର କଥା । ବ୍ରହ୍ମପୁରରେ ହେଉଥିବା ଯାବତୀୟ କାର୍ଯ୍ୟର ପରିପ୍ରେକ୍ଷୀରେ ଏହା ଏକ ଶୁଭ ସମ୍ବାଦ ।

'ରୋହିତର ଡାଏରୀ' ଏକାବେଳେକେ ଗୁଡାଏ ପୃଷ୍ଠା ପଢ଼ିବେ ନାହିଁ । ଦିନେ ବା ଦୁଇଦିନର ପଢ଼ିବା ପରେ ବନ୍ଦ କରି ଦେବେ । ତେବେ ବୋଧହୁଏ ଅଧିକ ଭଲ ଲାଗିବ । ଅବଶ୍ୟ ଏକଥା ମଧ୍ୟ ସତ ଯେ ପ୍ରଥମ ଖଣ୍ଡଟିରେ ପ୍ରତିଦିନ କେତେକ ସ୍ଥଳରେ ବହୁତ ବହୁତ ଲେଖା ହୋଇଛି । କେମିତି କେମିତି ଲାଗୁଥିବ । ସେତେବେଳେ ବୟସଟା ମଧ୍ୟ ସେହିପରି ଥିଲା । ପ୍ରାୟ ସବୁକିଛିକୁ ଭାଷାର ବିସ୍ତାର ଦେଇ ବିପୁଳ କରି ରଖିବାର ଏକ ଚପଳ ଉତ୍ସାହ ମଧ୍ୟ ରହିଥିଲା । ପରବର୍ତ୍ତୀ ଖଣ୍ଡମାନଙ୍କରେ ପ୍ରତିଦିନର ପରିମାଣ ଅନେକ କମି ଆସିଛି ।

ଡାଏରୀଗୁଡିକ କେବେ ଛପା ହେବ ବୋଲି ମୁଁ କେବେ କଳ୍ପନା କରି ନଥିଲି । ପ୍ରଧାନତଃ ମୁଁ ନିଜ ସୁଖରେ ଡାଏରୀ ଲେଖୁଥିଲି । ଆପଣା ଆଖିରେ ଯଥାସମ୍ଭବ ଅଧିକ ନିବିଡଭାବରେ ଧରାଦେଇ ମୁଁ ସେଗୁଡିକୁ ଲେଖିଥିଲି । ସେଗୁଡିକ ପାଠକ ଲାଗି ପଠନୀୟ ହୋଇପାରୁଛି, ତାହା ଆନନ୍ଦର କଥା । ଏପରି ହେଉଛି, କାରଣ ସମ୍ଭବତଃ ଅନ୍ୱେଷକ ପ୍ରତ୍ୟେକ ମନୁଷ୍ୟକୁ ପ୍ରାୟ ସମାନ ପ୍ରକାରର ଅନୁଭୂତି ମଧ୍ୟଦେଇ ଯିବାକୁ ପଡିପାରେ ।

ଆପଣ ବେଳେବେଳେ ସେହି ବିବରଣୀଗୁଡିକ ମଧ୍ୟରେ ଗୋଟାସୁଦ୍ଧା ନିମଗ୍ନ ଓ ଜଡ଼ିତ ହୋଇଯାଉଛନ୍ତି, ଏହା ଆଦୌ ପ୍ରାଣିକ ଦୁର୍ବଳତା ନୁହେଁ । ଏହାର କାରଣ ଆତ୍ମୀୟତା । ମଣିଷ ମଣିଷ ମଧ୍ୟରେ ସର୍ବୋତ୍ତମ ସମ୍ବନ୍ଧ ହେଉଛି ଏହି ଆତ୍ମୀୟତାର ସମ୍ବନ୍ଧ । ଏହା ଉଭୟପକ୍ଷକୁ ଐଶ୍ୱର୍ଯ୍ୟବାନ୍ କରେ ।......

**ଭୁବନେଶ୍ୱର, ୨୪ ।୩ ।୮୯**

.........ମୁଁ ଯେ କୌଣସି ବଢ଼ିଆ ସୂତ୍ର ପକାଇ ଆପଣଙ୍କ ସମସ୍ୟା ଗୁଡିକୁ ଛିଣ୍ଡାଇ ଦେଇ ପାରିବି, ସେକଥା ଆଦୌ ନୁହେଁ । ମାତ୍ର ଆମ ଭିତରେ ପରିଚୟ ବଢ଼ିବ, ଆମେ ପରସ୍ପରର ନିକଟବର୍ତ୍ତୀ ହେବା, ଏକାଠି ସମସ୍ୟାଗୁଡିକର ସମ୍ମୁଖୀନ ହେବା, ସେଥିରୁ ବଳ ଓ ବିଶ୍ୱାସ ମିଳିବ, ଏହା ହେଉଛି ସବୁଠାରୁ ବଡ଼ କଥା । ମଣିଷ ଏକାକୀ ନିଜର ସମସ୍ୟାକୁ ଓ ଏପରିକି ସମସ୍ତ ସମସ୍ୟାକୁ ମୁଣ୍ଡାଇବାକୁ ଇଚ୍ଛା କଲେ ତାହା ଅନେକ ସମୟରେ ପର୍ବତ ପରି ଏଡେ ବଡ଼ ହୋଇ ତାକୁ ତଳକୁ ଦାବି ଦିଏ । ମାତ୍ର, ଏକାଠି ସାଥୀ ଓ ସତୀର୍ଥମାନଙ୍କ ସହିତ ମିଶି ବାଟଚାଲିବାକୁ ଅନୁରାଗ ରଖିଥିଲେ ସମ୍ଭବତଃ ସେପରି ହୁଏ ନାହିଁ । ତେଣୁ ଆପଣ ଚିଠି ଲେଖିଲେ, ଭାରି ଭଲ କଲେ ।

ଏହି ଚିଠିର ମାଧ୍ୟମରେ ହୁଏତ ଆମ ଦୁହିଁଙ୍କର ଉପକାର ହେବ ।

ଆପଣଙ୍କର ସମସ୍ୟା ଆଦୌ କେବଳ ଆପଣଙ୍କର ସମସ୍ୟା ନୁହେଁ । ଆମେ ସବୁ ଯେଉଁ ସାମାଜିକ ଓ ସମ୍ବନ୍ଧଗତ ପରିବରଣ ଭିତରେ ଛନ୍ନ ହୋଇଛୁ, ସମାଜ-ବିଜ୍ଞାନରେ ଯାହାକୁ System ବୋଲି କୁହାଯାଏ, ତାହାର ସମସ୍ୟା ଏକାରେକ ପ୍ରକାରେ ଏହି ସମସ୍ୟାର ସମ୍ମୁଖୀନ ହେବା ସମ୍ଭବ ହୋଇପାରେ । ସମସ୍ୟାଟି ପ୍ରତି ଆମର ଆଭିମୁଖ୍ୟ ଉପରେ ତାହାର ସମ୍ମୁଖୀନ ହେବା ନିର୍ଭର କରେ । System ଯେମିତି ଅଛି, ସେମିତି ଥାଉ, ମୁଁ ତା'ଦ୍ୱାରା ଉପକୃତ ହେଉଥିବି ଏବଂ ନିଜ ପାଇଁ ନିରାପଦ କୋଣଟିଏ ବାଛି ନେଇ ଯଥାସମ୍ଭବ ଦ୍ୱନ୍ଦ୍ୱମୁକ୍ତ ହୋଇ ରହିବାକୁ ଚେଷ୍ଟା କରିବି, - ଏଇ ହେଉଛି ଗୋଟିଏ ପ୍ରକାରର ସମ୍ମୁଖୀନ ହେବା । System କୁ ବଦଳାଇବା ଲାଗି systemର ସମ୍ମୁଖୀନ ହେବା, ତାହା ଆଉ ଗୋଟାଏ ପ୍ରକାରର । ଶ୍ରୀ ଅରବିନ୍ଦ systemକୁ ବଦଳାଇବା କଥା କହିଛନ୍ତି, system ସହିତ ଖାପ ଖୁଆଇବା କଥା କହି ନାହାନ୍ତି ।......

## ରମାକାନ୍ତ ସ୍ୱାଇଁ

ଭୁବନେଶ୍ୱର, ତା୧୪ ।୧ ।୯୮

........ପୁଅ ବିଷୟରେ ଦୁଇ ପ୍ରକାର ମତ ସାଧାରଣତଃ ସାଂସାରିକ ଜୀବନ କ୍ଷେତ୍ରରେ ହୋଇଥାଏ । ତୁମେ ଦୁହେଁ ମଧ୍ୟ ଏଥିରୁ ବାଦ୍ ପଡିବ ନାହିଁ । ତେଣୁ, ତାହାକୁ ଉପଭୋଗ କର । ପୁଅ ତା'ର ସ୍ୱାଭାବିକ ଶୈଳୀରେ ବିକାଶ ଲାଭ କରୁଥାଉ । ପୁଅ ବଡ଼ ହୋଇଗଲା ପରେ ତୁମେ ଦୁହେଁ ବର୍ତ୍ତମାନର କଳହକୁ ମନେ ପକାଇ ହୁଏତ କେତେ ହସିବ । ତେବେ, ଚିନ୍ତା କରିବ ନାହିଁ ।.....

**ଭୁବନେଶ୍ୱର, ୧୪ ।୫ ।୯୮**

ପୁଅ ସମସ୍ୟା ଭିତରେ ହିଁ ବଢ଼ିବ । ତାକୁ ଦୁଇଜଣଯାକ କେବଳ ଖୁସି ହିଁ ଦିଅ । ତା'ର ଶାରୀରିକ ଅଭ୍ୟାସଗୁଡିକ ବିଷୟରେ ଯତ୍ନଶୀଳ ରହିବ । ମାତ୍ର, ତା' ଚିଡିବା, ଦୁଷ୍ଟ ହେବାକୁ ଗୁରୁତ୍ୱ ଦେବ ନାହିଁ । ପଡୋଶୀରେ ତା' ବୟସର ପିଲାଥିଲେ ସେମାନେ ଏକାଠି ଖେଳି ପାରିବେ । ଖାଇବା ବିଷୟରେ ରୁଚି ଅରୁଚି କିଛି ନରହୁ । ପିଲା ଖୁସି ହୋଇ ସବୁ ଖାଇବ । ତାହାହିଁ ସର୍ବୋତ୍ତମ ।....

## ରାଜେଶ କୁମାର ସାହୁ

**ଭୁବନେଶ୍ୱର, ୨୪ ।୧୨ ।୮୬**

..........ତୁମେ ଆସନ୍ତା Annual ପରୀକ୍ଷା ନିମନ୍ତେ ପ୍ରସ୍ତୁତ ହେଉଛ ବୋଲି ଜାଣିଲି । ଇଂରାଜୀରେ ଯେଉଁ ଦୁର୍ବଳ ଅଛ ବୋଲି ଲେଖିଛ, ଏହି କେତେମାସ ଚେଷ୍ଟା କଲେ ସେଇଟା ମଧ୍ୟ ଚାଲିଯିବ ବୋଲି ମୁଁ ଖୁବ୍ ଆଶା କରୁଛି । ଯାହାହେଉ ପଛକେ, ପାଠକୁ କେବେହେଲେ ଡରିବ ନାହିଁ । ଖୁସୀ ହୋଇ ପାଠ ପଢ଼ିଲେ କଷ୍ଟ ବିଷୟ ମଧ୍ୟ ସହଜ ହୋଇଯିବ ।.......

**ଭୁବନେଶ୍ୱର, ୧ ।୨ ।୯୦**

.......ପରୀକ୍ଷା ପାଇଁ ଖୁବ୍ ଭଲ ଭାବରେ ପ୍ରସ୍ତୁତ ହେବ । ଉଦ୍ୟୋଗୀ ବ୍ୟକ୍ତିର ଭାଗ୍ୟ ତା'ସାଥେ ସାଥେ ଥାଏ ।

**ଭୁବନେଶ୍ୱର, ୨୧ ।୨ ।୯୪**

.........ଜାନୁଆରୀ ୯,୧୦,୧୧,୧୨ ମୁଁ ଜ୍ୟୋତିବିହାରରେ ଥିଲି । ସେତେବେଳେ ଓଡ଼ିଆ ବିଭାଗର ଆନୁକୂଲ୍ୟରେ ୟୁ.ଜି.ସି.ର ଅର୍ଥ ସହାୟତାର ଏକ ଅଧ୍ୟୟନ- କାର୍ଯ୍ୟକ୍ରମ ଚାରି ସପ୍ତାହ ପାଇଁ ଚାଲିଥିଲା । ପ୍ରତିଦିନ ମୋତେ ତିନି ଘଣ୍ଟା କ୍ଲାସ୍ ନେବାକୁ ହେଲା । ଅଧ୍ୟାପକ ବନ୍ଧୁମାନଙ୍କ ସହିତ ବେଶ୍ ଆଲୋଚନା ମଧ୍ୟ ହେଉଥିଲା । ସେତେବେଳେ ତୁମ କଥା ମନେ ପଡୁଥିଲା । ତୁମ ବିଶେଷ ନିବନ୍ଧ ବିଷୟରେ ମୁଁ ଏକପାଖିଆ ହୋଇ ଲେଖିବା ଉଚିତ୍ ହେବ ନାହିଁ । ନିଜ ଗାଇଡ୍‌ଙ୍କ ସହିତ ଆଲୋଚନା ଦ୍ୱାରା ହିଁ ତୁମେ ଯାହା କିଛି ସ୍ଥିର କରିବ । କେବେ ସାକ୍ଷାତ ହେଲେ ଆମେ ସେହି ବିଷୟରେ କଥାବାର୍ତ୍ତା ହୋଇପାରିବା ।........

## ରେଣୁବାଳା ନାଥ

**ଭୁବନେଶ୍ୱର, ୨୧ ।୩ ।୯୫**

.......ଜଣକୁ ନିଜର ବୋଲି ଅନୁଭବ କରୁ କରୁ ହିଁ ଜଣେ ମଣିଷ ସବୁ ମଣିଷକୁ ଏବଂ ପୃଥିବୀଯାକକୁ ନିଜର ବୋଲି ଅନୁଭବ କରିବାକୁ ଶିକ୍ଷା କରିଥାଏ । କେତେକ ମଣିଷ ଦୁର୍ଭାଗ୍ୟବଶତଃ ପୃଥିବୀରେ କାହାକୁ ହେଲେ ନିଜର ବୋଲି ଅନୁଭବ କରିପାରୁ ନଥାନ୍ତି; ଏପରିକି ନିଜକୁ ମଧ୍ୟ ନିଜର କରିପାରନ୍ତି ନାହିଁ । ସେମାନେ ଈର୍ଷା ପରାୟଣ

ହୁଅନ୍ତି, ଛିଦ୍ର ଖୋଜି ବୁଲନ୍ତି, କାହାଭିତରେ ଏତେଟିକିଏ ମଳି ଦେଖିଲେ କେତେ ଖୁସି ହୋଇଯାଆନ୍ତି ।

ତେଣୁ, ତୁମେ ବ୍ୟସ୍ତ ହେବ ନାହିଁ । ନିଜ ଭିତରେ ସ୍ଥିର ରହିବ ଓ ନିଜକୁ ଶାନ୍ତଭାବରେ ଓଜନ କରି ଦେଖିବାକୁ ଚେଷ୍ଟା କିରବ ।........

**ଭୁବନେଶ୍ୱର, ୧ ।୯ ।୯୫**

..........ପୃଥିବୀରେ ଅନେକ ପ୍ରକାର ମଣିଷ ଅଛନ୍ତି । ମଣିଷ ଅନୁସାରେ ସ୍ଥାନ ମଧ୍ୟ ଅନେକ ପ୍ରକାରର । ତଥାପି ନିଜର ଯଥାସମ୍ଭବ ଦକ୍ଷତା ଓ ଗୁଣର ପରିଚୟ ଦେଇ ଆମକୁ ଯାବତୀୟ କାର୍ଯ୍ୟକ୍ଷେତ୍ରରେ ରହିବାକୁ ହେବ । ଘରେ ବସି ରହି ସଂସାରକୁ ଗାଳି ଦେଉଥିଲେ ସେଥିରେ କୌଣସି ଲାଭ ହେବନାହିଁ ।........

## ସବିତା ଜେନା

**ଭୁବନେଶ୍ୱର, ୨୧ ।୩ ।୯୫**

.....ଆଉ କାହାରି କଥାକୁ ଆପଣ କେବେହେଲେ ଠୋ'କରି ସମର୍ଥନ କିର ନେବେନାହିଁ । ଯାହାକିଛି ପ୍ରତି ଆପଣଙ୍କର ଆଗ୍ରହ ହେବ ଓ ଯାହାକିଛି ଆପଣଙ୍କ ଭିତରେ ଏକ ଦ୍ୱାରକୁ ଖୋଲି ଦେଉଥିବା ପରି ଆପଣ ଅନୁଭବ କରିବେ, ତାହାକୁ ସବାଆଗ ନିଜସ୍ୱ କରିବେ, - ନିଜର ସ୍ୱାଭାବିକ ଖୁସୀ ଓ ଇଛା ଗୁଡିକର ଛାଞ୍ଚରେ ତାକୁ ପାଗ କରିବେ । ତେବେ ଯାଇ ମୂଳତଃ ଗୋଟାଏ ଗୋଟାଏ କଥା ଆକାରରେ ଆପଣଙ୍କୁ ସ୍ପର୍ଶ କରିଥିବା କେତେ କ'ଣ ଆପଣଙ୍କ ପାଇଁ ସତକୁ ସତ ଏକ ବାଟରେ ପରିଣତ ହୋଇଯାଇ ପାରିବ ।

ଆଗେ ଗୁରୁ ବା ଶିକ୍ଷକଙ୍କୁ ବ୍ରହ୍ମା, ବିଷ୍ଣୁ ଓ ପରମେଶ୍ୱର ବୋଲି କୁହାଯାଉଥିଲା । ତାଙ୍କୁ ବ୍ରହ୍ମ ବୋଲି କୁହାଯାଉଥିଲା, ତାହା ଏକ ବିପଜ୍ଜନକ ରୀତି, ଏକ ବିକଜ୍ଜନକ ବାଟ । ଯାହାକୁ ଆମେ ଖୋଜୁଛୁ, ତାହା ଯଦି ଆମ ଭିତରେ ଅଛି, ତେବେ ଅସଲ ଗୁରୁ ବନ୍ଧୁରୂପେ ଆମକୁ ସେହି ଆଡକୁ ବାଟ ବତାଇଦେବ । ଆମକୁ ଗିଳି ପକାଇବାକୁ ଆଦୌ କୌଣସି ଉତ୍ସାହ ଦେଖାଇବ ନାହିଁ । ତେଣୁ, ସବୁଠାରୁ ନିରାପଦ ମାର୍ଗ ହେଉଛି, ଏହି ପୃଥିବୀରେ ଆମେ ସମସ୍ତେ ପରସ୍ପରର ବନ୍ଧୁ ହୋଇରହିବା ଏବଂ

ପରସ୍ପରର ଅଗ୍ରଗତିରେ ସତତ ସାହାଯ୍ୟ କରିବା । ଆମେ ଇଚ୍ଛା କଲେ ଯେ କୌଣସି ବିଦ୍ୟାଳୟରେ ମଧ୍ୟ ସେହି ରୀତିରେ ସବୁ କାର୍ଯ୍ୟ ଚାଲିପାରିବ ।

ଆପଣ କ'ଣ ସବୁ ଲେଖିଛନ୍ତି ଓ ଲେଖୁଛନ୍ତି ? ଯିଏ ଲେଖେ, ସିଏ ତଦ୍ଦ୍ୱାରା ନିଜକୁ ଦେଖିବାର ଦର୍ପଣଟିଏ ମଧ୍ୟ ପାଇଯାଏ, ନିଜକୁ ଘଷିମାଜି ମନୋମତ କରି ତିଆରି କରିବା ପାଇଁ ଆବଶ୍ୟକ ପଥରଟିଏ ପାଇଯାଏ । ସମ୍ବାଦ ଯାଇ ପହଞ୍ଚିବଣି ଯେ ମେ' ମାସରେ ଦଶଦିନିଆ ଶ୍ରମଶିବିର ଏଥର ଶାଳବଣିରେ ହେବ । ପ୍ରାୟ ଦୁଇଶହ ଭଉଣୀ ଓ ଭାଇ ଓଡ଼ିଶାର ଚାରିଆଡୁ ଆସି ଆପଣଙ୍କର ସେଠାରେ କୋଳାହଳ ଲଗାଇଦେବେ । ସ୍କୁଲ ତ ଛୁଟୀ ହୋଇ ଯାଇଥିବ । ତେଣୁ, ଆପଣ ମଧ୍ୟ ସେହି ଶିବିରରେ ଯୋଗ ଦେଇପାରିବେ । ନିଜ ପାଇଁ କେତେ ବନ୍ଧୁ ଆବିଷ୍କାର କରିପାରିବେ, ନିଜେ ମଧ୍ୟ କେତେକେତେ ବ୍ୟକ୍ତିଙ୍କର ବନ୍ଧୁ ହୋଇଯାଇପାରିବେ । ଶିବିରରେ ଯୋଗ ଦେଲେ ସେ କଥା ଆପଣ ବଳେ ଜାଣିବେ ।

**ଭୁବନେଶ୍ୱର, ୨୭ ।୪ ।୯୫**

......ବାଉରୀବନ୍ଧୁ ବାବୁ ଅନ୍ୟପକ୍ଷର ମନୋଭାବ ଓ ଦୃଷ୍ଟିକୋଣଟିକୁ ଯଥାସମ୍ଭବ ସହାନୁଭୂତି ସହିତ ବୁଝିବାକୁ ଚେଷ୍ଟା କରନ୍ତି । ନିଜର ମତକୁ କାହା ଉପରେ ଲଦି ଦିଅନ୍ତି ନାହିଁ । ତେଣୁ ତାଙ୍କର ପରାମର୍ଶରେ କାର୍ଯ୍ୟ କରିବା ତୁମ ଲାଗି ଏକ ଆନନ୍ଦମୟ ଅନୁଭୂତି ହୋଇ ରହିବ । ଯେତେ ଶୀଘ୍ର ପାରିବ, କାର୍ଯ୍ୟଟି ଆରମ୍ଭ କରିଦିଅ ।

ସର୍ବପ୍ରଥମେ ଆବଶ୍ୟକ ପୁସ୍ତକଗୁଡିକୁ ପଢ଼ିନେବ । କବି ଅଭିମନ୍ୟୁ ଯାହାକିଛି ଲେଖିଛନ୍ତି ଓ ତାଙ୍କର ରଚନା ସମ୍ପର୍କରେ ଯାହାସବୁ ଲେଖା ହୋଇଛି, ସେଗୁଡିକୁ ଗଭୀର ଭାବରେ ଅଧ୍ୟୟନ କରିନେବ । ତା'ପରେ ରୀତି ପର୍ଯ୍ୟାୟର ଅନ୍ୟ କବିମାନଙ୍କୁ । ମୋର ଅନୁମାନ ହେଉଛି, ସମୀକ୍ଷକମାନେ ଶ୍ରୀ ଉପେନ୍ଦ୍ର ଭଞ୍ଜଙ୍କୁ ମଝିରେ ରଖି ରୀତିଯୁଗର ବିଚାର ଦୁଇ ଭାଗରେ କରିଛନ୍ତି । ସେଗୁଡିକୁ ଅଧ୍ୟୟନ କରିବାକୁ ହେବ । ଡକ୍ଟର ଦାଶରଥି ଦାସଙ୍କର କବିସୂର୍ଯ୍ୟ କାବ୍ୟବିଭା ତୁମ ପାଖରେ ଥିବ । ଡ. ଗଙ୍ଗାଧର ବଳ ମଧ୍ୟ ଗୋପାଳକୃଷ୍ଣଙ୍କ ସମ୍ବନ୍ଧରେ ନିଜେ ବୃହତ୍ ନିବନ୍ଧଟିକୁ ଛପାଇଛନ୍ତି । ଏଗୁଡିକ ପାଠ କଲେ ଅଭିମନ୍ୟୁଙ୍କର କାବ୍ୟ ସାଧନା ମଧ୍ୟକୁ ବି ତୁମକୁ ବାଟ ଦିଶିବ ।

ଏଥର ତ ୧୦ ଦିନିଆ ଶ୍ରମ ଶିବିର ଶାଳବଣିରେ ହେବ । ସେଥିରୁ ତୁମେ ଖୁବ୍ ଲାଭବାନ୍ ହୋଇପାରିବ । ଓଡ଼ିଆ ସାହିତ୍ୟରେ ଅବଗାହୀଥିବା କେତେକ ବନ୍ଧୁ ମଧ୍ୟ ସେହି ପଲ ଭିତରୁ ମିଳିଯିବେ । ସେମାନଙ୍କୁ ଆବିଷ୍କାର କରିବ । ଏଥର ଗୋଟିଏ ନୂଆ ପୁସ୍ତକର ଅଧ୍ୟୟନ ଆରମ୍ଭରୁ ହେବ । ସେଥିରୁ ନିଜର ସମଗ୍ର ବିଷୟର ନିମନ୍ତେ ଅନେକ ଉପାଦେୟ ଉପାଦାନ ମିଳିଯିବ ।.........

**ଭୁବନେଶ୍ୱର, ୨୭ ।୧୧ ।୯୫**

.........ନିଜର ନିବନ୍ଧଟି ପ୍ରସ୍ତୁତ କରୁଥିବା ସମୟରେ ତୁମେ ଏତେ ନିଷ୍ଠାପର ଓ ନିବିଡ଼ଭାବେ ବିଷୟଟିର ଚିନ୍ତାକରୁଛ, ଏହା ସମସ୍ତଙ୍କଠାରେ ଦେଖା ଯାଏ ନାହିଁ । ସମସ୍ତେ ଖୁବ୍ ଶୀଘ୍ର କ'ଣଟାଏ ପାଇବେ ବୋଲି କାମଟାକୁ ବି ଯେକୌଣସି ପ୍ରକାରେ.... ବ୍ୟଗ୍ର ହେଉଥାନ୍ତି । କାର୍ଯ୍ୟଟା ସେମାନଙ୍କର ମୁଣ୍ଡ ଉପରେ ସତେ ଅବା ଗୋଟିଏ ବୋଝ୍ ହୋଇ ରହିଥାଏ । କିନ୍ତୁ ତୁମେ ସେହି ରୀତିର ଏକ ସମ୍ପୂର୍ଣ୍ଣ ବ୍ୟତିକ୍ରମ । ତୁମେ ନିଜର ଅଧ୍ୟୟନ କ୍ଷେତ୍ରକୁ ପ୍ରକୃତରେ ଭଲ ପାଉଛ, ନିଜ ଅବବୋଧ ଗୁଡ଼ିକର ଦର୍ପଣ ଉପରେ ବିଷୟର ବିଭିନ୍ନ ଅଭିଧା ଓ ବ୍ୟଞ୍ଜନାକୁ ଅନୁଶୀଳନ କରି ଦେଖୁଛ, ସେଥିଲାଗି ଏଥିରେ ଏତେ ଆନନ୍ଦ ପାଉଛ । ସେହି ଆନନ୍ଦ ଉତ୍ତରୋତ୍ତର ବୃଦ୍ଧି ପାଉଥାଉ । ଏବଂ, ସେହି ପ୍ରକ୍ରିୟାରେ ତୁମକୁ ସେଠି ସବୁକିଛି ଅତ୍ୟନ୍ତ ସହଜ ଲାଗୁ । ନିଜର ଅଧ୍ୟୟନ ତୁମକୁ ଆହୁରି ଅଧିକ ଗ୍ରହଣଶୀଳ କରି ରଖିଥାଉ । ତୁମେ କେତେଦୂର ସେପରି ସ୍ଥିତିଟିକୁ ସ୍ଥାୟୀ ଭାବରେ ଧାରଣ କରି ରଖିପାରୁଛ ତାହା ଜାଣିବା ସକାଶେ ହିଁ ଦେହର ଅସୁସ୍ଥତା ଦେଇ ତୁମର ଅତି ନିକଟର ଜଣେ ବନ୍ଧୁ ଯେପରି ତୁମକୁ ପରୀକ୍ଷା କରୁଛନ୍ତି । ପରୀକ୍ଷା କରୁ କରୁ ତୁମକୁ ଉତ୍ତୀର୍ଣ୍ଣ କରାଇ ନେଉଛନ୍ତି, ଟାଣ କରି ନେଉଛନ୍ତି । ତେଣୁ, ବିଶ୍ୱାସ ହରାଇବ ନାହିଁ । ଅବଶ୍ୟ ସର୍ବଦା ସାବଧାନ ରହିଥିବ ଓ ଦେହର ଅବହେଳା କରିବ ନାହିଁ ।

**ଭୁବନେଶ୍ୱର, ୧୮ ।୧ ।୯୬**

.........ଚିନ୍ତନ ଆଉ ଚିନ୍ତା - ଏପରି ଦୁଇଟା ଶବ୍ଦ ଅଛି । ଚିନ୍ତନ ଶବ୍ଦେ ଗୁଣ ବଢ଼ୁ, ତଦ୍ୱାରା ହୃଦୟ ବିସ୍ତାରିତ ହୋଇ ଯାଉଥିବ, ନିଜର ଖୁସୀ ଇଚ୍ଛା କଲା ମାତ୍ରକେ ଚଉଦ ଭୁବନ ଘୂରି ଆସୁଥିବ । ରକ୍ତର କୌଣସି ଚାପ ବଢ଼ିବାର ଅବକାଶ ହିଁ ନଥିବ । ମାତ୍ର, ଚିନ୍ତା ତାହା ଯେତେ ଟିକିଏ ବି ହେଉ ନା କାହିଁକି, ମଣିଷକୁ ଖାଇଯିବ ।

ପୃଥିବୀରେ ଏତେ ଏତେ ଆମଠାରୁ କେତେ ଅସୁବିଧା ଓ ଅନିଶ୍ଚିତତା ଭିତରେ ରହିଛନ୍ତି । ତଥାପି ସେମାନଙ୍କର ରାତି ପାହୁଛି, ସେମାନେ ବି ପୃଥିବୀରେ କେତେ କେତେ ଖିଅ ଲଗାଇ ପାରୁଛନ୍ତି । ସମ୍ଭବତଃ ଯେତେ ଦେଉଛନ୍ତି, ତାହାର ହଜାରେ ଭାଗରୁ ଭାଗେ ମଧ୍ୟ ପାଉ ନାହାନ୍ତି । ତେଣୁ ଚଞ୍ଚଳତାପ ବଢ଼ିବାଟା ଗେହ୍ଲା ମଣିଷମାନଙ୍କର ଲକ୍ଷଣ । ତୁମେ ତ ଆଦୌ ଗେହ୍ଲା ନୁହଁ, ତେବେ ଏଭଳି କାହିଁକି ହେଉଛି ?

ହୁଏତ, ଆଗରୁ ଗେହ୍ଲାପଣ ରହିଥିଲା, ଅବବୋଧର ପାଖୁଡ଼ାମାନ ଖୋଲିବା ସଙ୍ଗେ ସଙ୍ଗେ ତୁମକୁ ଛାଡି ପଳାଇଯିବା ଆଗରୁ ସେହି ଗେହ୍ଲାପଣ ନିଜର ଏକ ଶେଷ ପରାକ୍ରମ ଦେଖାଉଛି, ପ୍ରତିରୋଧ କରିବାକୁ ଇଚ୍ଛା କରୁଛି, ପରୀକ୍ଷା କରୁଛି । ତୁମେ ସେହି ପରୀକ୍ଷାରେ ନିଶ୍ଚୟ ପାସ୍ କରିଯିବ । ତେଣୁ, ଅପେକ୍ଷା କର । ପୂର୍ଣ୍ଣ ବିଶ୍ୱାସର ସହିତ ଅପେକ୍ଷା କରିପାରିଲେ ସବୁ ସମତୁଲ ହୋଇଯିବ ।

ନିଜ କବିତାର ମୂଲ୍ୟାୟନ ନିଜେ କରନ୍ତି । ଗୋଟିଏ କବିତା ମାଧ୍ୟମରେ ତୁମେ ଯାହା ଯେପରି ଭାବରେ ବ୍ୟକ୍ତ କରିବାକୁ ମନ କରିଥିଲ, ତାହା କରି ପାରିଲ କି ନାହିଁ, ତାହାର ମୂଲ୍ୟାୟନ ତୁମେ ନିଜେ କରିବ । ଅନ୍ୟ ଜଣେ ମତ ଦେବ, ନିଜର କର୍ତ୍ତାପଣ ଦେଖାଇବ ସିନା, ମାତ୍ର ତୁମକୁ ଅସଲ ସାହାଯ୍ୟ ଦେବାର କ୍ଷେତ୍ରରେ ବିଶେଷ କିଛି ସାହାଯ୍ୟ କରି ପାରିବ ନାହିଁ ।

ତେଣୁ ପଢ଼, ଚିନ୍ତନରେ କୁଆଡେ କୁଆଡେ ଛନ୍ଦି ହୋଇଯାଅ । ନିଜର ଯାହା ସତକୁ ସତ କରିବାର କଥା, ସେସବୁଥିରେ ଆପଣାକୁ ଖେଳାଇ ଦିଅ । ଗୁଡି ହୋଇ ଯୁଆଡେ ଇଚ୍ଛା ଉଡ, ମାତ୍ର ଲଟେଇଟି ଯାହା ହାତରେ ରହିବା କଥା, ତାହାରି ହାତରେ ହିଁ ରହିଥାଉ ।........

ଭୁବନେଶ୍ୱର, ୧୯ ।୫ ।୯୬

ନିବନ୍ଧର ପ୍ରଥମ ଅଧ୍ୟାୟ ଔପଚାରିକ ଭାବରେ ସରିଲା ଜାଣି ଅତ୍ୟନ୍ତ ଖୁସୀ ହେଲି । ତେଣୁ ମନ୍ତବ୍ୟ କ'ଣ ସବୁ ଆସିବ ଦେଖାଯାଉ । ନିବନ୍ଧଟି ଶୀଘ୍ର ସମ୍ପୂର୍ଣ୍ଣ ହେଉ ବୋଲି ମୁଁ ଯେ ଏତେ ଗୁରୁତ୍ୱ ଦେଉଛି, ତାହାର ମୁଖ୍ୟ କାରଣ ହେଉଛି ଯେ, ଏହି ଲେଖାଟି ସରିଲେ ଯାଇ ତୁମେ ପୂର୍ଣ୍ଣ ନିଃଶଙ୍କ ଭାବରେ ନିଜର କଥା କହିବା ପାଇଁ ଯାହା କିଛି ଲେଖିପାରିବ । ନିବନ୍ଧ ଲେଖାଟା ତଥାପି ଏକ କର୍ତ୍ତବ୍ୟ । ଅନ୍ୟମାନଙ୍କର ପସନ୍ଦ ଓ ଅନୁମୋଦନ ସକାଶେ ପ୍ରଧାନତଃ ଲେଖିବାକୁ ପଡେ । ସମ୍ମୁଖକୁ ଅନାଇଲେ

ହିତଟିଏ ଛିଡା ହୋଇ ରହିଥାଏ । ଅବାଧରେ କେବଳ ନିଜକୁ ହିଁ ନିଜର ମିତ କରି ପହଁରି ହୁଏ ନାହିଁ । ଉଡିବା ତ ଆହୁରି ଦୂରର କଥା ।

...... ଶ୍ରମଶିବିରକୁ ସମସ୍ତେ ଆଗ ଆଗ କ'ଣ ସବୁ ପାଇବେ ବୋଲି ଯାଆନ୍ତି । ମାତ୍ର, କ'ଣ ସବୁ ପାଉ ପାଉ କ'ଣ ସବୁ ହୋଇଯାଏ କେଜାଣି, ତା'ପରେ ଶ୍ରମଶିବିରରେ ଗୋଟାସୁଦ୍ଧା ସାମିଲ ହୋଇଯାଆନ୍ତି, - ତା'ପରେ କେତେ ପାଇଲି ବା କେତେ ଦେଲି କିଛି ହୋସ୍ ରହେ ନାହିଁ । ପାଇବା ଓ ଦେବା ସମ୍ଭବତଃ ଗୋଟିଏ ପ୍ରକ୍ରିୟାରେ ପରିଣତ ହୋଇଯାଏ । ସେତିକିବେଳେ ଯଥାର୍ଥ ଆନନ୍ଦ ମିଳେ ।

ଭୁବନେଶ୍ୱର, ରାକ୍ଷୀ ପୂର୍ଣ୍ଣିମା ୯୬

.....ଇଟାଲୀର ଆଠୋଟି ପନ୍ଦର ଷୋଳ ବର୍ଷର ପିଲା, - ସେମାନେ ନିଜ ଶିକ୍ଷକଙ୍କ ପାଖକୁ ଯେଉଁ ଚିଠି ଲେଖିଥିଲେ, ତାହାରି ଓଡ଼ିଆ ଅନୁବାଦ ହେଉଛି "ଜଣେ ଶିକ୍ଷକଙ୍କ ଚିଠି ।" ଗତ ଜୁନ୍ ମାସରେ କୋଣାର୍କ ଠାରେ ଅନୁଷ୍ଠିତ ଏକ କର୍ମଶାଳାରେ ବହିଟିର ଉଦ୍‌ଘାଟନ ହେଲା । ଏହି ପିଲାମାନେ ବଡ଼ ଗରିବ ଘରର । ଇସ୍କୁଲରେ ଭଲ ପଢ଼ିଲେ ନାହିଁ, ଫେଲ୍ ହେଲେ । କାମ କରି କିଛି ଉପାର୍ଜନ କରି ଘରକୁ ପୋଷିଲେ । ତଥାପି ନିଜ ରୁଚି ଅନୁସାରେ ଏକ ଅଭିନବ ସ୍କୁଲ ଚଳାଇଲେ ଓ ସେହିଠାରେ ପଢ଼ିଲେ । ଯେଉଁ ସ୍କୁଲରୁ ତଡ଼ା ଖାଇଥିଲେ, ତାହାରି ଜଣେ ଶିକ୍ଷୟିତ୍ରୀଙ୍କ ପାଖକୁ ଏହି ଚିଠି ଲେଖାଯାଇଛି ।

ଆଗାମୀ ଶ୍ରମଶିବିର ଯାଜପୁର ଜିଲ୍ଲାର ନାଉପାଳରେ ହେବ । ୧୯୯୩ ଗ୍ରୀଷ୍ମକାଳରେ ସେଠାରେ ଶ୍ରମଶିବିର ହୋଇଥିଲା । ଘର ତିଆରି କାମ, ମାଟି ବୋହି ଖାଲ ଭରିବାର କାମ ଇତ୍ୟାଦି । ତୁମେ ଯିବ । ଯାଜପୁରରୁ ବସ୍ ଅଛି । ରଶ୍ମି ଭାଇଙ୍କୁ ଜଣା ଅଛି ।

ମାତ୍ର, ସେତେବେଳକୁ ନିବନ୍ଧ ଲେଖା ସମ୍ପୂର୍ଣ୍ଣ ହୋଇଯାଇଥିବା ଉଚିତ୍ । ତେବେ ପୂରା ହାଲୁକା ହୋଇ ଶ୍ରମଶିବିରକୁ ଯାଇ ପାରିବ । ସେହି ଅନୁସାରେ ଯୋଜନା କରି ଟାଉ ଟାଉ ଲେଖାଟି ସାରିଥିବ । ଭିତରଟା ସମ୍ମତ ଓ ସ୍ଥିର ରହିଥିଲେ ବାହାରେ ଦଉଡିଲେ ମଧ କିଛି ଚିନ୍ତାକରିବାର ନାହିଁ । ତେଣୁ ଅଧାୟକୁ ଅଧାୟ ମୁଣ୍ଡିମାରିବାରେ ଲାଗିଯାଅ । ବାଉରୀବନ୍ଧୁ ବାବୁଙ୍କ ପରାମର୍ଶ ଅନୁସାରେ ପୂର୍ଣ୍ଣ ଉତ୍ସାହରେ ଲେଖିଯାଅ ।

**ଭୁବନେଶ୍ୱର, ୧୩ ।୧ ।୯୭**

......ତପସ୍ୱୀ ଗଙ୍ଗାଧରଙ୍କ ବିଷୟରେ ତୁମେ ମୋ' ଲେଖାଟି ପଢ଼ିବାକୁ ପାଇଛ ବୋଲି ପ୍ରମାଣ ମିଳିଲା । ବହୁ ବର୍ଷ ତଳେ ସେଇଟିକୁ ଲେଖିଥିଲେ ମଧ କିପରି ଏକ ଅନ୍ତରଭରା ସହଜତା ସହିତ ମୁଁ ତାହା ଲେଖିଥିଲି, ସେକଥା ଏବେ ମଧ ମନେ ରହିଛି । କବିତା, ଗପ ଆଦି ବେଳେ କ'ଣ ହୋଇଥାଏ କେଜାଣି, ପ୍ରବନ୍ଧଟିଏ ଲେଖି ସାରିବା ବେଳକୁ ପ୍ରବନ୍ଧକାରର ନିଜ ଆଖିଟି ମଧ ଆହୁରି ନିର୍ମଳ ହୋଇଯାଇଥାଏ । ସମ୍ଭବତଃ ସେହି କାରଣରୁ ମୁଁ ପ୍ରବନ୍ଧକୁ ହିଁ ମୁଖ୍ୟତଃ ମୋ' ଲେଖାର ମାଧମ ବୋଲି ଗ୍ରହଣ କରିଛି । ଭାବିକରି କିଛି କରି ନାହିଁ ସତ, ମାତ୍ର ଲେଖୁଁ ଲେଖୁଁ ମୋ'ର ସ୍ୱାଭାବିକ ଗୁଳାଟି ଭିତରକୁ ଆସିଯାଇଛି ।

....ଇତି ମଧରେ ଅଭିମନ୍ୟୁଙ୍କ କାମ ବହୁତ ଆଗେଇ ଯାଇଥିବ ବୋଲି ଆଶା କରୁଛି । ମନଲାଖି କାମଟିଏ ହୋଇଥିଲେ ନିଜକୁ ଠିକ୍ ଜନନୀ ପରି ଅନୁଭବ ହୁଏ । ନିଜକୁ ଦେବାରେ ଆଦୌ କୌଣସି କୃପଣତା ନ ଥାଏ । ଯେତିକି ଦେଇହୁଏ, ସେତିକି ଖୁସୀ ଲାଗୁଥାଏ । ଆହୁରି ଦେବାକୁ ଇଚ୍ଛା ହୋଉଥାଏ । ଅଭିମନ୍ୟୁଙ୍କୁ ସିଡି ବା ସେତୁ ପରି ବ୍ୟବହାର କରି ତୁମେ ମଧ ନିଜକୁ ଅଧିକରୁ ଅଧିକ ଆବିଷ୍କାର କରୁଥିବ ଓ ଖୁସୀ ହେଉଥିବ ।

**ଭୁବନେଶ୍ୱର, ୧୨ ।୮ ।୯୭**

ଚିଠିକୁ ମଧ ବହୁତ ଦୃଷ୍ଟିରୁ ଏକ କଥାବାର୍ତ୍ତା ବା dialogue ବୋଲି କୁହାଯାଇ ପାରିବ । Dialogue ଖାଲି ଗୋଟାଏ ପାଖରୁ ଚାଲିପାରେ ନାହିଁ । ତେଣୁ, ମୋ ପାଖରୁ ଚିଠିର ଉତ୍ତର ଦେଇ ନ ପାରୁଥିଲେ ବ୍ୟସ୍ତ ଅବଶ୍ୟ ଲାଗେ ନାହିଁ, ମାତ୍ର କେମିତି କେମିତି ଲାଗୁଥାଏ ।

ସବା ଆଗ ନିଜ ନିବନ୍ଧଟି କଥା । ତାକୁ ଯଥାସମ୍ଭବ ଶେଷ କରିବାକୁ ଚେଷ୍ଟା କରିବ । ସେଥିପାଇଁ ଆବଶ୍ୟକ ଅଧୟନ ମଧ କରିବ । ସେଥିରେ ଆଦୌ କୌଣସି ଅବହେଳା କରିବ ନାହିଁ । ନିବନ୍ଧଟି ଶେଷ ହେଲେ ଖୁବ୍ ହାଲୁକା ଲାଗିବ । ହାଲୁକା ହେବାରୁ ନିଜ ଭିତରୁ ନୂଆ ନୂଆ ସର୍ଜନାତ୍ମକତା ଆଡକୁ ବାଟ ଫିଟିଯିବ । ସେଥିରୁ ଯେଉଁ ଖୁସୀ, ତାହାର ତୁଳନା ନାହିଁ । ତେଣୁ ଅଭିମନ୍ୟୁଙ୍କୁ ସାକ୍ଷୀ ରଖି ତାଙ୍କ କାମଟି ଶେଷ କରିଦିଅ ।

**ଭୁବନେଶ୍ୱର, ୨ ।୧୧ ।୯୮**

.........ତୁମର ଅଧ୍ୟୟନ ଓ ଅଧୀକ୍ଷାର ପର୍ଯ୍ୟାୟଟି ସରି ଏବେ ଶେଷ ପାଣ୍ଡୁଲିପିର ପ୍ରସ୍ତୁତି ଚାଲିଛି, ଏହି ସମ୍ବାଦ ହିଁ ସବୁଠାରୁ ବଡ ସମ୍ବାଦ । ସେହି ଖୁସୀଟିର କଥା କହିବାକୁ ଏହି ସାନ ଚିଠିଟି ଲେଖୁଛି । ତୁମକୁ ଅଭିନନ୍ଦନ ଜଣାଉଛି ।

ଏଣିକି ଅଧିକ ସହଜରେ ପାହାଚ ଉଠିବା ସମ୍ଭବ ହୋଇଯିବ । ଦେହ, ମନ, ଆତ୍ମା ସମସ୍ତେ ସାହାଯ୍ୟ ଓ ସହଯୋଗ କରିବେ । ଏବଂ, ଏସବୁ ଦେଖି ତୁମକୁ ଜାଣିଥିବା ଆମେ ସମସ୍ତେ ଖୁସି ହେଉଥିବୁ ।......

**ଭୁବନେଶ୍ୱର, ୭ ।୭ ।୯୯**

......ପ୍ରକୃତରେ କିଛି ସରିଲା ନାହିଁ । ଆରମ୍ଭ ହେଲା । ନିବନ୍ଧଟି ଲେଖିବା ଦ୍ୱାରା ସ୍ୱଚ୍ଛନ୍ଦ ଓ ସ୍ୱାଧୀନ ଭାବରେ ଏଣିକି ଆହୁରି କେତେ କ'ଣ ଲେଖିବାର ଅନୁମତି ପତ୍ର ମିଳିଗଲା । ପାଦତଳେ ଟାଣମାଟି ଅରାଏ ମଧ୍ୟ ମିଳିଗଲା । ଏହି କଥାଟିକୁ ମୋଟେ ଭୁଲିବ ନାହିଁ । ଅର୍ଥାତ୍ ପ୍ରତ୍ୟେକ ମାସରେ ଅଥବା ଦୁଇମାସରେ ଗୋଟିଏ ସତକୁ ସତ ମୌଳିକ ଚିନ୍ତାଯୁକ୍ତ ପ୍ରବନ୍ଧ ପ୍ରସ୍ତୁତ କରିବ । ବର୍ତ୍ତମାନଠାରୁ ସେହିପରି ତିନୋଟି ବା ଚାରୋଟି ବିଷୟ ସ୍ଥିର କରିନିଅ ଓ ସେହି ଅନୁସାରେ ପ୍ରସ୍ତୁତି ଆରମ୍ଭ କରିଦଅ । ନିବନ୍ଧର ବିଷୟଟିକୁ ଭିତ୍ତି କରି ମଧ୍ୟ ଆଉ କେତୋଟି କ୍ଷୁଦ୍ରାବୟବ ପ୍ରବନ୍ଧ ବେଶ୍ ଲେଖି ହେବ । ଏତେ ବଡ଼ କାମଟିଏ ସଂପୂର୍ଣ୍ଣ କରିଦେଲ, ତେଣୁ ନିଜ ଭିତରେ କେତେ ନା କେତେ ବିଶ୍ୱାସ ଆସିଯାଇଥିବ ।

ମୁଁ ସିନା ମୋ ତରଫରୁ ପରାମର୍ଶ ଦେଉଛି, କିନ୍ତୁ ଭାବୁଛି ତୁମେ ଠିକ୍ ଏହି କଥାଟିକୁ ଆଗରୁ ନିଜେ ଚିନ୍ତା କରିଛ ଓ କାର୍ଯ୍ୟ ଆରମ୍ଭ କରିଦେଇଛ । ତାହା ହିଁ ହେଉ ।.........

**ଭୁବନେଶ୍ୱର, ୨୦ ।୪ ।୦୧**

......... ଆମେ ଯେଉଁମାନେ ଦେବାକୁ ଏକ ଆନନ୍ଦମୟ ବ୍ରତରୂପେ ଗ୍ରହଣ କରିନେବା, ଆମକୁ ସବୁଜାଗା ଭଲ ହିଁ ଲାଗିବ । ସବୁଠାରୁ ସାନ ଓ ବଡ଼ ଆପଣାର ଲୋକମାନେ ଅବଶ୍ୟ ମିଳିଯିବେ । ଏହି ଦୃଷ୍ଟିରୁ ଦେଖିଲେ ଜଣେ ଶିକ୍ଷକକୁ ପ୍ରକୃତରେ ଅମିତ ଭାଗ୍ୟର ଅଧିକାରୀ ବୋଲି କୁହାଯିବ ।.......

**ସଞ୍ଜୟ କୁମାର ପ୍ରଧାନ**

**ଭୁବନେଶ୍ୱର, ୨୧ ।୬ ।୯୧**

.........ଭଗବାନ ତ ପ୍ରତ୍ୟେକ ମଣିଷ ଭିତରେ ସର୍ବଦା ରହିଛନ୍ତି । ତୁମେ ପୁଣି ତାଙ୍କୁ ଅଧମିନିଟ ବା କେତେ ମିନିଟ ଲାଗି ତାଙ୍କର ଇଛା ଗୁଡିକୁ ନିଜ ଭିତରେ ଅନୁଭବ କରିବ କ'ଣ ? ଆମେ ଓଲଟା ଭାବରେ ଭାବୁଥିବା ପର୍ଯ୍ୟନ୍ତ ସେ କେବେହେଲେ ଆମକୁ ପ୍ରତ୍ୟକ୍ଷ ହେବେ ନାହିଁ । ତୁମର ଶରୀରରେ ଦୁଇଟି ଗୋଡ଼ ରହିଛି । ତୁମେ ନିଜର ଗୋଡ଼ ଦୁଇଟା ରହିଛି ବୋଲି କ'ଣ ସଚେତନ ଭାବରେ ସର୍ବଦା ଭାବିଲେ ଯାଇ ନିଜ ଗୋଡ଼ ପ୍ରକୃତରେ ଅଛି ବୋଲି ବିଶ୍ୱାସ କରିପାରୁଛ । ଗୋଡ ରହିଛି, ନିଜର କାମ କରୁଛି । ଭଗବାନଙ୍କୁ ନିଜ ଜାଲରେ ବା ଖୁଣ୍ଟରେ ବାନ୍ଧି ରଖିଲେ ଯାଇ ହିଁ ତୁମେ ଭଗବାନଙ୍କୁ ଅନୁଭବ କରିପାରିବ ବୋଲି ଅପେକ୍ଷା କରି ରହିଛ ।.........

ତୁମକୁ ଦୁଇଟା କଥା କହିବି । ପ୍ରଥମତଃ, ନିଜ ଭିତରେ ଯେଉଁ ସବୁ ସମ୍ଭାବନା ରହିଛି, ତାହାର ଆବିଷ୍କାର କର ଓ ସେଗୁଡିକର ଅଧିକରୁ ଅଧିକ ବିକାଶ କରାଅ । ସେଗୁଡିକୁ ନିଜର ସବୁଠାରୁ ଅଧିକ ମୂଲ୍ୟବାନ୍ ରତ୍ନ ବୋଲି ଚିହ୍ନ । ଦ୍ୱିତୀୟ କଥା ହେଉଛି, ତୁମେ ଆମର ଶିବିର ଗୁଡିକରେ ନିୟମିତ ଯୋଗ ଦିଅ । ଏକୁଟିଆ ରହିଥିବା ପର୍ଯ୍ୟନ୍ତ ମିଛଟାରେ ନାନା ପ୍ରକାର ଖଣ୍ଡିଆ ହୋଇ ରହିଥିବ । ନିଜେ ନିଜର ଶତ୍ରୁ ହୋଇ ନିଜକୁ ଅଙ୍କୁଶ ମାରୁଥିବ, ନିଜ ପଛରେ ପୋଲିସ ହୋଇ ବେତ ଧରି ଗୋଡାଉଥିବ ।

ପାଠପଢ଼ା ଖୁବ୍ ଭଲ ଭାବରେ ଚାଲିଥିବ ବୋଲି ଆଶା କରୁଛି ।

**ଭୁବନେଶ୍ୱର, ୧୬ ।୯ ।୯୬**

.........ପିଲାମାନଙ୍କ ସହିତ ତୁମେ ଉଚିତ୍ ବ୍ୟବହାର କରୁଛ କି ନାହିଁ, ସେ ବିଷୟରେ ବେଶୀ ଚିନ୍ତା କରିବ ନାହିଁ । ନିଜର ଅଗ୍ରଗତିକୁ ସବୁଠାରୁ ଅଧିକ ଗୁରୁତ୍ୱ ଦେବ । ଜ୍ଞାନରେ ଅଗ୍ରଗତି, ଅନ୍ୟକୁ ବୁଝିବାରେ ଅଗ୍ରଗତି, ଭିତରେ ତଥା ବାହାରେ ସକଳ ପରିସ୍ଥିତିରେ ଖୁସୀ ରହିବାର ଅସଲ ଲକ୍ଷ୍ୟର ଅଗ୍ରଗତି । ତେବେ ଦେଖିବ, ତୁମ ପିଲାମାନେ ତୁମକୁ ସାଙ୍ଗ କରି ନେବେ ତୁମ ସହିତ ବାଟ ଚାଲିବେ ।........

## ସନ୍ତୋଷ କୁମାର ଗାହାଣ

**ଭୁବନେଶ୍ୱର, ୨୧ ।୧୧ ।୮୮**

.........ବିବାହ ସ୍ଥିର ହୋଇଯିବା ସମ୍ବାଦ ଆମ ସମସ୍ତଙ୍କ ପାଇଁ ଶୁଭ ସମ୍ବାଦ । କ୍ରମେ ଦାୟିତ୍ୱ ବଢ଼ିବ, - ବହୁ ପରିମାଣରେ ଓ ବହୁ ଆଡକୁ ବଢ଼ିବ । ଆପଣ ଆହୁରି ହାଲୁକା ହୋଇଯାଉଥିବେ । କୌଣସି ଗୋଟିଏ କ୍ଷେତ୍ରକୁ ମଧ୍ୟ ଅବହେଳା କରିବେ ନାହିଁ । ମାତ୍ର, କେବେହେଲେ ଦାୟିତ୍ୱଗୁଡାକୁ କିପରି ସମ୍ଭାଳିବେ ବୋଲି ତ୍ରସ୍ତ ହୋଇପଡିବେ ନାହିଁ । ଅସଲ କେନ୍ଦ୍ରଟି ସହିତ ସୂତ୍ର ଲାଗିଥିଲେ ପ୍ରତ୍ୟେକ ମୁହୂର୍ତ୍ତରେ ଜୀବନର ଅସଲ ଖୁସୀଟିର ଅନୁଭବ ହେଉଥିବ ଓ ତାହାହିଁ ଆମକୁ ସହଜ ଭାବରେ ଯାବତୀୟ କର୍ମର ମାଧ୍ୟମରେ ପରିଚାଳିତ କରି ନେଉଥିବ ।.............

**ଭୁବନେଶ୍ୱର, ୧୨ ।୬ ।୮୯**

.....ଇନ୍ଦ୍ରାବତୀ ଶିକ୍ଷାକେନ୍ଦ୍ର ୧୯ ତାରିଖଦିନ ଖୋଲିବ । ଆପଣମାନେ ଛରିଜଣ ନୂଆ ଶିକ୍ଷକ ରଖିବେ ନା ପୁରୁଣାଙ୍କ ମଧ୍ୟରୁ ଛରିଜଣଙ୍କୁ ବିଦାୟ ଦେଇ ସେମାନଙ୍କ ସ୍ଥାନରେ ସେମାନଙ୍କୁ ରଖିବେ, ସେ ବିଷୟରେ ମୁଁ ସ୍ପଷ୍ଟ ହୋଇପାରିଲି ନାହିଁ । ଟ୍ରଷ୍ଟର ଗୋଟିଏ ଲିଖିତ ପରାମର୍ଶ ରହିଛି ଯେ ତିନିବର୍ଷ ଅବିଚ୍ଛିନ୍ନ ଭାବରେ ଶିକ୍ଷକତା କରିଥିବା କୌଣସି ଶିକ୍ଷକଙ୍କୁ ଏପରି ହଠାତ୍ ତଡିଦେବା ଉଚିତ୍ ହେବ ନାହିଁ । ଆବଶ୍ୟକ ପଡିଲେ ସେଥିଲାଗି ଟ୍ରଷ୍ଟକୁ ଜଣାଇବାକୁ ପଡିବ । ସେଠିକା ଶିକ୍ଷକ ପୂର୍ଣ୍ଣଭାଇଙ୍କଠାରୁ ଚିଠି ପାଇଛି । ସେ ଗତବର୍ଷ ଏକାଧିକ ଭୁଲ୍ କରିଛନ୍ତି ବୋଲି ସ୍ୱୀକାର କରିଛନ୍ତି ଓ ଆଗାମୀ ଶିକ୍ଷା ବର୍ଷରେ ଏକ ନୂତନ ପରିବର୍ତ୍ତନ ମନ ନେଇ କାର୍ଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ଯିଏ ନିଜର ଭୁଲ୍ ପାଇଁ ଦୁଃଖ କରୁଛନ୍ତି, ସେମାନଙ୍କୁ ଅନ୍ତତଃ ବର୍ଷେ ସମୟ ଦେବାକୁ ହେବ । ଅନ୍ୟ ଶିକ୍ଷକମାନଙ୍କ ମନରେ ମଧ୍ୟ ପ୍ରାୟତଃ ସେହିପରି ପ୍ରତିକ୍ରିୟା ହୋଇଥିବ । ମୋର ପ୍ରସ୍ତାବ, ଯେଉଁମାନଙ୍କର କାର୍ଯ୍ୟରେ ପରିଚାଳନାର୍ଥୀ ସନ୍ତୁଷ୍ଟ ନୁହନ୍ତି ସେମାନଙ୍କୁ ଏହି ବର୍ଷଟା ସମୟ ଦିଆଯାଉ । ବର୍ଷ ଆରମ୍ଭରୁ ସେ କଥା କହି ଦିଆଯାଉ ଓ ସେମାନଙ୍କର ଯାବତୀୟ କାର୍ଯ୍ୟ ଉପରେ ଦୃଷ୍ଟି ରଖାଯାଉ । ସେଥିଲାଗି ଏକ ସ୍ୱତନ୍ତ୍ର review committee ରହୁ । ଏବଂ ସେହି କମିଟିର ସୁପାରିଶ ଅନୁସାରେ ବର୍ଷ ଶେଷରେ ଯାଇ ନିଷ୍ପତ୍ତି ନିଆଯାଉ । ଶିକ୍ଷକ ନିବାସର ନିର୍ମାଣ ଅନ୍ୟ design ଅନୁସାରେ ହୋଇଥାନ୍ତା । ଅନ୍ତତଃ ଝିଅମାନେ ଯେଉଁଠି

ରହିବେ, ତାହା ଖଞ୍ଜା ପରି ହୋଇଥାନ୍ତା । ବାହାରକୁ ଗୋଟିଏ ବାଟ ଥାଆନ୍ତା । ବର୍ତ୍ତମାନ ତିଆରି ହୋଇଥିବା ଘରଟା ବାରାକ୍ ପରି ଦିଶୁଛି । ଅପାମାନଙ୍କ ଲାଗି କୌଣସି ପ୍ରାଇଭେସି ନାହିଁ । ତେଣୁ, ଉଚିତ୍ ପରିବେଶ ସୃଷ୍ଟି ହୋଇପାରୁ ନାହିଁ । ଘରେ ମନ ନ - ଲାଗିଲେ ପିଲାଏ ଘରକୁ ଅସନା କରନ୍ତି, ଅସୁନ୍ଦର କରନ୍ତି, ଖାମଖିଆଲି ହୁଅନ୍ତି । କୌଣସି କାରଣରୁ ସେଠା ଅପା ଭାଇମାନେ ଶିକ୍ଷାକେନ୍ଦ୍ରକୁ ନିଜ ଘର ବୋଲି ଗ୍ରହଣ କରି ନାହାନ୍ତି । ମୁଁ କାହାକୁ ଦୋଷ ଦେଉନାହିଁ । ମାତ୍ର ଯାହା ଲକ୍ଷ୍ୟ କରିଛି, ତାହାହିଁ କହୁଛି । ପିଲାଙ୍କ ଭିତରକୁ ମଧ ସେହି ଉପେକ୍ଷା ଓ ଉଦାସୀନତା ଅତିମାତ୍ରାରେ ସଂକ୍ରମିତ ହୋଇଛି । ଛୁଟୀରେ ଶିକ୍ଷାକେନ୍ଦ୍ରର ଦେଖାଶୁଣା କିପରି ଭାବରେ ହେବ, ସ୍କୁଲ ବନ୍ଦ ହେବା ଆଗରୁ ଏକାଠି ବସି ତାହାର ଆଲୋଚନା ହୋଇଥାଆନ୍ତା । ସେହି ଅନୁସାରେ ବିଭିନ୍ନ ଦାୟିତ୍ୱ ତୁଲାଯାଇଥାନ୍ତା । ତେଣୁ, ଏହି ଦିଗରେ ଏକ ଅନୁକୂଳ ପରମ୍ପରାର ସୃଷ୍ଟି ହୋଇପାରିବା ଉଚିତ୍ । ପରସ୍ପରର ନିକଟବର୍ତ୍ତୀ ହୋଇ ଆସିବା ସଙ୍ଗେ ସଙ୍ଗେ ପରମ୍ପରାଟି ସମ୍ଭବ ହେବା ଅନେକ ସହଜ ହୋଇ ଆସିବ ।

ତେଣୁ ଫେରିବା ବେଳକୁ ଅଗଷ୍ଟ ପ୍ରଥମ ସପ୍ତାହ ହୋଇଯିବ । ସେତେବେଳକୁ ଆପଣଙ୍କ ଠାରୁ କିଛି ସମ୍ବାଦ ପାଇବି ବୋଲି ଆଶା କରୁଛି । ପୁରୁଣାବର୍ଷ ଗୁଡିକରୁ ଆମେ ସମସ୍ତେ ଉଚିତ୍ ଶିକ୍ଷା ଲାଭ କଲେ ବହୁ ସମସ୍ୟାର ସମାଧାନ ବଳେ ହୋଇଯିବ । ଆପଣ ନିଜେ ଏ ଦିଗରେ ସବା ଆଗରେ ରହିବେ । ମୁଁ ଆପଣଙ୍କ ବ୍ୟତୀତ ଆଉ କାହାକୁ ଏହି କାର୍ଯ୍ୟ ପାଇଁ ଅଧିକ ଉପଯୁକ୍ତ ବୋଲି ଭାବୁନାହିଁ ।..........

## ସ୍ନେହ ଅପା

**ଭୁବନେଶ୍ୱର, ୩।୨।୯୫**

.........ନିଜକୁ ଭଲ ପାଇବାର ଅର୍ଥ ଅନେକ । କହି କରି ବୁଝାଇଦେଇ ହେବନାହିଁ । ନିଜ ଭିତରେ ଅନୁଭବ କରିବାକୁ ପଡିବ । ସର୍ବନିମ୍ନ କଥା ହେଉଛି ଯେ ନିଜକୁ କଦାପି ହୀନ ବା ଛୋଟ ମନେ କରିବ ନାହିଁ । ଆମେ ସମସ୍ତେ ଭଗବାନଙ୍କର ଦାନରୂପେ ଏହି ଜଗତକୁ ଆସିଛୁ, ଏକଥାଟି ଯଦି ଠିକ୍ ହୋଇଥାଏ, ତେବେ ଆମ ସଂସାରରେ ମଣିଷମାନେ ପରସ୍ପରକୁ ଛୋଟ ଓ ନ୍ୟୁନ କରି ରଖିବାକୁ ଏତେ ଉତ୍ସାହ କାହିଁକି ଦେଖାଉଛନ୍ତି । ନିଜ ଭିତରେ ଅନେକ ଖଣ୍ଡିଆ ରହିଥିବା ସତ୍ତ୍ୱେ ନିଜ ଭଲ

ଗୁଣଗୁଡିକୁ ଆବିଷ୍କାର କରି ସେଗୁଡିକର ପୂର୍ଣ୍ଣତର ବିକାଶ ଲାଗି ଉଦ୍ୟମ କରିବା । ନିଜକୁ ସହାନୁଭୂତି ସହିତ ଦେଖୁଥିଲେ ଯାଇ ତାହା ସମ୍ଭବ ହୋଇ ପାରିବ ।........

**ଭୁବନେଶ୍ୱର, ୨୯ ।୪ ।୯୫**

.......ଧ୍ୟାନ ଓ ପ୍ରାର୍ଥନାର ୧୪ ଜୁନ୍, ୧୯୧୪ର ପ୍ରାର୍ଥନାଟି ସମ୍ବନ୍ଧରେ : ଆମ ଦ୍ୱାରା ତାଙ୍କର କାର୍ଯ୍ୟହେବ ବୋଲି ଆମର ସଂକଳ୍ପ । ଏହି ଦୁଇଟିଯାକ ଏକତ୍ର ହେବେ । ଆମରି ଜୀବନରେ ଏହା ଘଟିବ । ମାତ୍ର, ସେଥିପାଇଁ ଆମେ ସବୁ ଭୟ ଛାଡିବା ଓ ନିଜକୁ ମଜବୁତ ଭୂମିଟିଏ ପରି ତିଆରି କରିବା । ଯାହାପାଇଁ ଜୀବନ ଉତ୍ସର୍ଗୀକୃତ, ଆମେ ତାହାରି କଥା ଶୁଣିବା । ସେକଥା ଆମେ ଯୋଗ୍ୟ ହେଲେ ଆମ ଭିତରୁ ହିଁ ଆମେ ଶୁଣିପାରିବା । ମାତ୍ର, ଭୟ ଥିବା ପର୍ଯ୍ୟନ୍ତ ଆଦୌ ଶୁଣିପାରିବା ନାହିଁ । ଭୟ ଥିବାଯାଏ ଶରୀର ମଧ୍ୟ ଅସୁସ୍ଥ ହେଉଥିବ । ଏକଥା ତୁମେ ନିଜ ଜୀବନରେ ପରୀକ୍ଷା କରି ଦେଖିବ ।.......

## ସୁରେନ୍ଦ୍ର କୁମାର ନାୟକ

**ଭୁବନେଶ୍ୱର, ୨୫ ।୯ ।୯୩**

.........ଜଣେ ଶିକ୍ଷକ ନିଜକୁ ସର୍ବଦା ଅଧିକରୁ ଅଧିକ ଯୋଗ୍ୟ କରୁଥିବ, ତେବେ ପିଲାମାନେ ମଧ୍ୟ ଉତ୍ସାହର ସହିତ ତା'ର ଘରି ପାଖରେ ସର୍ବଦା ବେଢ଼ି ରହିଥିବେ ।......

**ଭୁବନେଶ୍ୱର, ୪ ।୭ ।୯୪**

........ଉପରକୁ ଯାଉଥିବା ସଙ୍ଗେ ସଙ୍ଗେ ଯେଉଁ ଅଧିକ ଦାୟିତ୍ୱ ଧରୁଥିବ, ତାହାର ସମ୍ମୁଖୀନ ହେବା ଲାଗି ଆମକୁ ଯୋଗ୍ୟ କରି ନିଅନ୍ତୁ ।

କେହି ଜନ୍ମରୁ depressed ନଥାଏ । କେତେକ କାରଣରୁ ଆମେ ଏହି ପୃଥିବୀରେ ହିଁ ସେପରି ହେବାକୁ ଶିଖିଥାଉ । ଏହା କ୍ରମେ ଦୂର ହୋଇଯିବ । ନିଜର ସମସ୍ୟା, ଅଡୁଆ ଓ ବାଧାଗୁଡିକ ଅତିରିକ୍ତ ଭାବରେ ଭାବୁଥିବା ପର୍ଯ୍ୟନ୍ତ ମଣିଷ depressed ହେବାକୁ ଉତ୍ସାହ ପାଏ । ଅନ୍ୟମାନଙ୍କ ସମ୍ପର୍କରେ ଆସି ସେମାନଙ୍କର

ଦୁଃଖ, ସୁଖ, ବିକାଶ ଓ ଅଗ୍ରଗତିରେ ଭାଗୀଦାର ହେବା ସଙ୍ଗେ ସଙ୍ଗେ ଏପରି ଭାବ ମଧ୍ୟ କ୍ରମଶଃ ଛାଡି ହୋଇଯାଏ ।........

ଭୁବନେଶ୍ୱର, ୨୪ ।୧୦ ।୯୪

..........ତୁମ ଶିକ୍ଷକମାନଙ୍କ ଭିତରେ ଯେଉଁ ସଂହତି ରହିଛି, ତାହାହିଁ ରହିଥାଉ ଓ ଅଧିକ ଦୃଢ଼ ହେଉ । ତାହାହିଁ ବିଜୟ ଲାଭ କରିବ । ଆମେ ଯଦି ସ୍ୱତନ୍ତ୍ର ଭାବରେ କିଛି ଦେଖାଇଦେଇ ପାରିବା, ତେବେ ତାହା ବର୍ତ୍ତମାନ ଆମଠାରୁ ଦୂରରେ ରହିବାକୁ ଇଛା କରୁଥିବା ବ୍ୟକ୍ତିମାନଙ୍କର ଉଦାସୀନତାକୁ ମଧ୍ୟ ଭାଙ୍ଗି ଦେଇପାରିବା । ଶିକ୍ଷାକେନ୍ଦ୍ରରେ ଯାହାକିଛି ନିଷ୍ପତ୍ତି ନିଆଯିବ, ତୁମେମାନେ ଏକାଠି ବସି ଆଲୋଚନା କରି ସେହି ନିଷ୍ପତ୍ତିଗୁଡିକ ଗ୍ରହଣ କରିବ । ଏପରି ହେଲେ ଭୁଲ ବୁଝାମଣା ଗୁଡିକ ମଧ୍ୟ ଦୂର ହୋଇଯିବ । ମାତ୍ର ସବୁଠାରୁ ଆଗ କଥା ହେଉଛି, ଜଣେ ଜଣେ ଶିକ୍ଷକ ହିସାବରେ ଆମେ ନିଜ ଜ୍ଞାନ ଓ ଉଦ୍ୟମରେ ମଧ୍ୟ ସର୍ବଦା ଉନ୍ନତି ସାଧନ କରି ଚାଲିଥିବା । ତେବେ, ସମସ୍ତଙ୍କ ଆଗରେ ମେରୁଦଣ୍ଡ ସିଧା କରି ନିଜର କହିବା କଥାଟିକୁ କହିବାକୁ ସମର୍ଥ ହେବା ।.......

ଭୁବନେଶ୍ୱର, ୯ ।୪ ।୯୬

........ଆମେ ପିଲାଙ୍କ ପ୍ରତି ଯଥାଶକ୍ତି ଆମର କର୍ତ୍ତବ୍ୟ କରିବା । ସେମାନଙ୍କର ନିଜ ବଳ ଉପରେ ବିଶ୍ୱାସ ରଖିଥିବା । ତେଣୁ ବ୍ୟସ୍ତ ହେବ ନାହିଁ । ସପ୍ତମ ପିଲା ପରୀକ୍ଷାରେ ଭଲ ଫଳ ଆଣିବାକୁ ହେଲେ ଚତୁର୍ଥଶ୍ରେଣୀରୁ ସେଥିପାଇଁ ମୂଳଦୁଆ ପକାଇବାକୁ ହେବ ।

ସଂସାର ବଦଳିବା ନିମନ୍ତେ ମହାପୁରୁଷମାନେ ଚିରକାଳ ତୁମ ଆମପରି ସାଧାରଣ ମଣିଷଙ୍କ ଉପରେ ନିର୍ଭର କରିଛନ୍ତି । ମହାପୁରୁଷମାନେ ପୂଜିତ ହେଲେ ସଂସାର ବଦଳିବ ନାହିଁ । ତେଣୁ, ଆମେ ଆମ ସଂସାରକୁ ଏପରି ଭାବରେ ତିଆରି କରିବା ଯେପରି ଘର ପ୍ରତି ଆମର ଦାୟିତ୍ୱ ଏବଂ ଆମେ ନିଜେ ଗ୍ରହଣ କରି ନେଇଥିବା କାର୍ଯ୍ୟ ପରସ୍ପରର ସହଯୋଗୀ ଏବଂ ପରିପୂରକ ହୋଇ ରହିବେ । ତେବେ ଆଉ ଦୁଇଫାଳ ହେବାକୁ ପଡିବ ନାହିଁ ।

ଏହି ସବୁ ସମସ୍ୟାକୁ ନିଜ ଭିତରେ ଆଲୋଚନା କରିବ । ଆମ ମାର୍ଗରେ ଏକୁଟିଆ ଯୋଗୀ ପରି ନିଜ କାର୍ଯ୍ୟଟିକୁ କରିବାର ରୀତିର ସ୍ଥାନ ନାହିଁ । ତେଣୁ ଆମେ ସମସ୍ତେ ତଥାପି ବାଟ ଚାଲିବା ଓ ପରସ୍ପରର ଅଗ୍ରଗତିରେ ପରସ୍ପରକୁ ପ୍ରେରଣା ଦେବା । ଏପରି ହେଲେ ଆମ ପ୍ରତ୍ୟେକଙ୍କର ବାଟ ସହଜ ହୋଇଯିବ ।.....

**ଭୁବନେଶ୍ୱର, ୯ ।୧୦ ।୯୬**

.........ଯେ ପର୍ଯ୍ୟନ୍ତ ପରିଚାଳକ ଏବଂ ଶିକ୍ଷକ ଏକାଠି ଶିକ୍ଷାକେନ୍ଦ୍ରକୁ ନିଜର ଘର ବୋଲି ନ ଭାବିଛନ୍ତି, ଆମେ ପରସ୍ପର ଅଧିକରୁ ଅଧିକ ନିକଟକୁ ଆସିବା ନିମନ୍ତେ ନିଶ୍ଚୟ ଚେଷ୍ଟା କରିବା । ଆମ ବଡ଼ମାନଙ୍କର ସ୍ତରରେ ଦୂରତା ରହିଥିବା ପର୍ଯ୍ୟନ୍ତ ଆମେ ପିଲାମାନଙ୍କର ଅଗ୍ରଗତି ହେଲାଭଳି ମଧ୍ୟ ବିଶେଷ କିଛି କରିପାରିବା ନାହିଁ ।.......

**ଭୁବନେଶ୍ୱର, ୮ ।୫ ।୯୭**

..........ଆଗାମୀ ଶ୍ରମଶିବିରକୁ ଅନ୍ୟମାନଙ୍କ ସହିତ ତୁମେ ମଧ୍ୟ ଆସିବ ବୋଲି ଆଶା କରୁଛି । ନୂଆ କରି କିଛି କରି ଦେଖାଇଦେବାରେ ଆମ ଚାରିପାଖରେ ବହୁତ ବାଧା ରହିଛି । ସେଥିଲାଗି ଅନେକ ବ୍ୟକ୍ତି କେବେ କିଛି ହୋଇ ପାରିବ ନାହିଁ ବୋଲି ଧରି ନେଉଛନ୍ତି ଓ ରହିଯାଉଛନ୍ତି । ଆମେ ସେପରି କରିବା ନାହିଁ । ଅନ୍ତତଃ ନିଜ ଉପରୁ ବିଶ୍ୱାସ ହରାଇବା ନାହିଁ । ଏବଂ, ଯାବତୀୟ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ନିଜକୁ ଅଧିକରୁ ଅଧିକ ଯୋଗ୍ୟ କରିବାରେ ଲାଗିଥିବା ଏବଂ ସବୁଠାରୁ ବଡ଼ କଥା ହେଉଛି, ପରସ୍ପର ସହିତ ସମ୍ପର୍କ ରଖିଥିବା । ଏକାଠି ସ୍ୱପ୍ନ ଦେଖୁଥିବା, ପରସ୍ପରକୁ ବଳ ଦେଉଥିବା ବେଳେ ଦିନେ ନା ଦିନେ ଆସିବ ।

**ଭୁବନେଶ୍ୱର, ୫ ।୮ ।୯୭**

.........ପିଲାଙ୍କ ପରୀକ୍ଷାଫଳ ଭଲ ହୋଇଛି, ତାହା ତୁମ ସମସ୍ତଙ୍କର ଗୌରବ । ଶିକ୍ଷକ ଗୋଷ୍ଠୀର ବଳ ଓ ବିଶ୍ୱାସ ବଢ଼ିଲେ ଶିକ୍ଷାକେନ୍ଦ୍ରରେ ବହୁତ କିଛି ସମ୍ଭବ ହୋଇପାରିବ ।

ଆବର୍ଜନାକୁ ଦେଖ ନାହିଁ । ଆଲୋକକୁ ଦେଖ । ନିଜ ଭିତରେ ତଥା ଅନ୍ୟସମସ୍ତଙ୍କ ଭିତରେ ଠିକ୍ ସେହିପରି ଦେଖ । ଆଲୋକ ଉପରେ ନିଜର ବିଶ୍ୱାସ

ବଢ଼ିଲେ ଏବଂ ନିଜ ଭିତରେ ରହିଥିବା ଆଲୋକଟିକୁ ନିଜର ଅସଲ ସଙ୍ଗୀବୋଲି ଅନୁଭବ କରିପାରିଲେ ବହୁତ ବହୁତ ଅଡୁଆର ସହଜ ସମାଧାନ ହୋଇଯିବ । ପରୀକ୍ଷା କରି ଦେଖ ।......

**ଭୁବନେଶ୍ୱର, ୪ ।୨ ।୯୮**

..........ଏଥରର ଶ୍ରମଶିବିର ବିଷୟରେ ବନ୍ଧୁମାନେ ଖୁବ୍ ଉତ୍ସାହପୂର୍ଣ୍ଣ କଥାସବୁ ଲେଖୁଛନ୍ତି । ଏହି ପରି ହେବା ହିଁ ଉଚିତ୍ । ବର୍ଷରେ ଦୁଇଥର ମୁକ୍ତ ସୌହାର୍ଦ୍ଦ୍ୟର ସହିତ ପରସ୍ପର ସହିତ ଏକାଠି ହେଲେ ତାହା ଆମ ପ୍ରତ୍ୟେକଙ୍କର ଅଗ୍ରଗତିରେ ବହୁତ ସାହାଯ୍ୟ କରିବ ।

ହତାଶ ହୁଅ ନାହିଁ । ନିଜ ବିରୋଧରେ ଆଦୌ କୌଣସି ଅଭିଯୋଗ କରନାହିଁ । ଭିତରେ ଯାହାକିଛି ଅବାଞ୍ଛନୀୟ ହୋଇ ରହିଥାଉ ପଛକେ, ଶେଷରେ ସମସ୍ତେ ଚୈତ୍ୟସତ୍ତାର ସ୍ପର୍ଶରେ ହିଁ ଆପଣାର ଅସଲ ଧର୍ମକୁ ଫେରି ଆସିବେ । ତେଣୁ ଖୁସିରୁହ, ଏବଂ ତାହାରି ଉପରେ ନିରନ୍ତର ଆସ୍ଥା ରହିଥାଉ ।...........

**ଭୁବନେଶ୍ୱର, ୧୨ ।୬ ।୯୮**

.........ଭଗବାନଙ୍କର ଯାହାକିଛି କାର୍ଯ୍ୟ, ସବୁ ସଂସାରକୁ ନେଇ । ତେଣୁ, ସଂସାର ଭିତରୁ ବାହାରିଯାଇ ନୁହେଁ, ସଂସାର ଭିତରେ ରହି ହିଁ ଅଧିକ ଉପଯୁକ୍ତ ଭାବରେ ତାଙ୍କର କାର୍ଯ୍ୟ କରିହେବ । ସଂସାର ଭିତରୁ ପଳାଇଯାଇ ତୁମେ ସଂସାରକୁ ବଦଳାଇ ପାରବ ନାହିଁ । ତେଣୁ ନିଜର ବିବେକକୁ ଭଲ କରି ଜାଣ ଓ ସେହି ଅନୁସାରେ କାର୍ଯ୍ୟ କର ।

..........ଓଡ଼ିଶା ଉପର ଦେଇ ଏହି ଯେଉଁ ଗ୍ରୀଷ୍ମ ତାପର ଭୟଙ୍କରତା ବୋହିଗଲା, ସେଥିରେ ଶହ ଶହ ମଣିଷଙ୍କର ପ୍ରାଣ ଗଲା । ଭଗବାନଙ୍କର ସଂସାରରେ ମଣିଷ ଏତେ, ଅସହାୟ ଭାବରେ ମରିବ କାହିଁକି ? ଭାରତରେ ଆମେ ସବାଆଗ ସେହି କଥା ଚିନ୍ତା କରିବା ।.....

**ଭୁବନେଶ୍ୱର, ୧୯ ।୨ ।୯୯**

.........ସାଙ୍ଗ କେହି ନଥାନ୍ତି । ସାଙ୍ଗମାନଙ୍କୁ ଖୋଜି ପାରିଲେ ସେମାନେ ମିଳିଯାଆନ୍ତି । ମାତ୍ର, ନିଜ ଭିତରେ ନିଜ ସହିତ ଝଗଡ଼ା ଲାଗିଥିଲେ ଓ ନିଜକୁ

ଏଇଟା ବା ସେଇଟା ସକାଶେ ନ୍ୟୁନ ବୋଲି ମଣୁଥିଲେ, ଅନ୍ୟ ଭିତରେ ସାଙ୍ଗଟିଏ ଆବିଷ୍କାର କରିବା କଷ୍ଟକର ହୁଏ । ପ୍ରୟୋଗ କରି ଦେଖିବ ଏବଂ ବାଧାଗୁଡିକୁ ଡେଇଁଯିବ ।........

## ଶରତ ଚନ୍ଦ୍ର ଦାଶ

### ଭୁବନେଶ୍ୱର, ୧୪ ।୬ ।୯୪

........ଆମ ଭିତରେ ନିଜ ଉପରେ, ପରସ୍ପର ଉପରେ ଓ ଏହି ପୃଥିବୀର ଉଜ୍ଜ୍ୱଳ ଭବିଷ୍ୟତ ଉପର ବିଶ୍ୱାସ ରଖିଥିବା । ଆମ ଆଖିକୁ ଅସଲ ସତ୍ୟଟି ଉଜ୍ଜ୍ୱଳ ହୋଇ ଦେଖାଯାଉଥିବା ଯାଏ ଏହି ପୃଥିବୀ ଆମକୁ କଦାପି ଅନ୍ଧାର ଦେଖାଯିବ ନାହିଁ । ତୁମମାନଙ୍କୁ ନିମିତ୍ତ କରି ସେଠାରେ କେତେ କ'ଣ ସମ୍ଭବ ହେବ । ଅନ୍ୟମାନଙ୍କୁ ମଧ ସାଙ୍ଗରେ ନେବାକୁ ଉଦ୍ୟମ କର ।......

### ଭୁବନେଶ୍ୱର, ୨୬ ।୧୦ ।୯୪

.........କୁମୁଦର ଚିଠିରୁ ଜାଣିଲି ଯେ ୧୯୯୫ ଜୁଲାଇ ଠାରୁ ଶିକ୍ଷାକେନ୍ଦ୍ରଟିଏ ଆରମ୍ଭ କରାଯିବ ବୋଲି ତୁମେମାନେ ନିଷ୍ପତ୍ତି ଗ୍ରହଣ କରିଛ । ଏହା ହିଁ ସବୁଠାରୁ ଅଧିକ ଖୁସୀର ସମ୍ବାଦ । ତୁମମାନଙ୍କର ସ୍ୱପ୍ନରେ ଭଗବାନଙ୍କର ଡେଣା ଲାଗୁ ଓ ତାହାକୁ ସେ ଅନୁରୂପ ଭୂମିଟିଏ ଯୋଗାଇଦିଅନ୍ତୁ ।

### ଭୁବନେଶ୍ୱର, ୨୪ ।୧ ।୯୫

..........ତୁମେମାନେ ଯେପରି ନିର୍ମଳ ମନ ନେଇ କାର୍ଯ୍ୟଟିଏ ଆରମ୍ଭ କରିବାକୁ ଯାଉଛ ଓ ସେଥିଲାଗି ବ୍ୟକ୍ତିଗତ ତଥା ସାମୂହିକ ଭାବରେ କ୍ରମେ ପ୍ରସ୍ତୁତ ହେଉଛ, ତାହାକୁ ଆମେ ସମସ୍ତେ କେତେ ନା କେତେ ପ୍ରତ୍ୟାଶାର ସହିତ ଅପେକ୍ଷା କରି ରହିଛୁ । ସେଠାରେ ଅନେକ କିଛି ସମ୍ଭବ ହେବ । ପରିସ୍ଥିତି ବହୁତ ଅନୁକୂଳ ରହିଛି । ସମସ୍ୟା ଆସିବ, ତଥାପି ସମସ୍ୟାରୁ କୌଣସି ଭୁଲ ବୁଝାମଣା ଯେ ମୋଟେ ସୃଷ୍ଟି ହେବ ନାହିଁ, ସେ ବିଷୟରେ ମୋର ପୂର୍ଣ୍ଣ ବିଶ୍ୱାସ ମଧ ରହିଛି । ତେଣୁ, ଆଗକୁ ଆଗକୁ ବାହାରି ଯାଅ ।......

**ଭୁବନେଶ୍ୱର, ୮ ।୫ ।୯୫**

......ରୁପ୍ରା ବିଷୟରେ ତୁମେ ସମସ୍ତେ ବହୁ ଦିନରୁ ଦେଖି ଆସିଥିବା ସ୍ୱପ୍ନଟି କ୍ରମେ ସାକାର ହୋଇ ଆସୁଛି, ଏହା ଆମ ସମସ୍ତଙ୍କ ପାଇଁ ବହୁତ ଖୁସୀର ଖବର । ତାହା ଆମ ସମସ୍ତଙ୍କୁ ବଳ ଓ ସାହାସ ଆଣିଦେବ ।

**ଭୁବନେଶ୍ୱର, ୭ ।୯ ।୯୫**

...ଠିକ୍ ଅଗଷ୍ଟ ଛଅ ପାଖାପାଖି ତୁମର ଚିଠି ପାଇଥିଲି । ଭାବିଲି, ଶିକ୍ଷାକେନ୍ଦ୍ରଟି ସୁରୁ ହୋଇଯିବା ପରେ ତେଣୁ କାହାଠାରୁ ନିଶ୍ଚୟ ଚିଠି ଆସିବ ଓ ତା'ପରେ ଯାଇ ତୁମକୁ ଉତ୍ତର ଦେବି । ଏପର୍ଯ୍ୟନ୍ତ କାହାରି ଠାରୁ ସମ୍ବାଦ ଆସି ପହଞ୍ଚି ନାହିଁ, ଖୁବ୍ ସମ୍ଭବ, ସମସ୍ତେ ନୂଆକାମଟିରେ ଲାଗି ଯାଇଛ ଏବଂ ଚିଠିପତ୍ର ଲେଖି ଅନ୍ୟମନସ୍କ ହେବାକୁ ଆଦୌ ଇଛା କରୁନାହଁ । କୁମୁଦ ମଧ ଠିକ୍ ସମୟରେ ମୋର ଚିଠି ପାଇଥିବ ।

ତୁମେ ସମସ୍ତେ ଯେଉଁ ବୃହତ୍ ଉଦ୍ୟମଟିକୁ ଆରମ୍ଭ କରିଛ, ଆମେ ସମସ୍ତେ ତାହା ପଛରେ ରହିଛୁ । ଆମେ ସମସ୍ତେ ପରସ୍ପର ସାଥିରେ ସବୁବେଳେ ରହିଛୁ । ତେଣୁ ଆଦୌ କୌଣସି ଚିନ୍ତା ରହିବା ଉଚିତ୍ ନୁହେଁ । ବର୍ତ୍ତମାନ ପାଞ୍ଚ ବରଷ ଲାଗି ତୁମମାନଙ୍କୁ ଆଉକେଉଁ ଆଡକୁ ମନ ଦେବା ଲାଗି ଫୁରସତ ମଧ ମିଳିବ ନାହିଁ ।.........

**ଭୁବନେଶ୍ୱର, ୩ ।୨ ।୯୭**

............ଆଗାମୀ ଶ୍ରମଶିବିର ନାଉପାଳରେ । ସେଠାକୁ ସମସ୍ତେ ଆସିବ । ସବୁକାର୍ଯ୍ୟକ୍ରମ ପୂର୍ଣ୍ଣ ଉତ୍ସାହରେ ଚାଲିଛି । ତୁମେମାନେ ମଧ ସେଥିରେ ସାମିଲ୍ ହେବ । ରୁପ୍ରାରୁ କାହିଁକି କେହି ଆସୁନାହାନ୍ତି ବୋଲି ସମସ୍ତେ ପ୍ରଶ୍ନ କରୁଛନ୍ତି । ସେଠା ଶିକ୍ଷାକେନ୍ଦ୍ର କ୍ରମଶଃ ତା'ର ନିଜସ୍ୱ ଧାରାରେ ଚାଲିବ । ଶିକ୍ଷାକେନ୍ଦ୍ରର ଉଦ୍ୟମରେ ଆମେ ଏକାଠି ହୋଇ ନିଜେ ମଧ ଅଗ୍ରଗତି କରିବା ।

ଆଗାମୀ ବର୍ଷାଦିନ ଲାଗି ଗଛ ଲଗାଇବାର ପୂର୍ଣ୍ଣ ଯୋଜନାଟିଏ ସମସ୍ତେ ମିଶି ସ୍ଥିର କରିବ । ଗତ ଛଅମାସର ଉଦ୍ୟମ ଓ ଅଗ୍ରଗତି ବିଷୟରେ ବିବରଣୀଟିଏ ପ୍ରସ୍ତୁତ କରି 'ସୁହୃତ' ପତ୍ରିକା ସକାଶେ ଆଶିଷ ଭାଇଙ୍କ ପାଖକୁ ପଠାଇଦେବ ।........

**ଭୁବନେଶ୍ୱର, ୨୫ ।୪ ।୯୭**

.........ବିଦ୍ୟାଳୟ ସମ୍ବାଦ କିଛି ଲେଖିଲ ନାହିଁ । ଗୋଟିଏ ବର୍ଷରେ ବହୁତ ଅଭିଜ୍ଞତା ହୋଇଥିବ । କିପରି ହେବା ଉଚିତ୍ ଓ କିପରି ହେବା ଉଚିତ୍ ନୁହେଁ, ଦୁଇଟିଯାକ ଅଭିଜ୍ଞତା । ଆମେ ସଫଳ ବା ବିଫଳ ଯେତେବେଳେ ଯାହା ହେଉଥିବା ପଛକେ, ପରସ୍ପରର ଅଧିକ ନିକଟବର୍ତ୍ତୀ ନିଶ୍ଚୟ ହେଉଥିବା । ତାହାହିଁ ସବୁଠାରୁ ବଡ଼ ଉପଲବ୍‌ଧି ।.......

**ଭୁବନେଶ୍ୱର, ୨୪ ।୯ ।୯୭**

.........ଏଣିକି, 'ସୁହୃତ୍' ବର୍ଷକୁ ଚାରିଥର ପ୍ରକାଶ ପାଇବ ବୋଲି କଥା ହୋଇଛି । ଗତ ସେପ୍ଟେମ୍ବରେ ସଂଖ୍ୟାଟି ଏବେ ବାହାରିଲା । ସେଥିରେ ଗୁପ୍ରା ବିଷୟରେ କିଛି ନାହିଁ । ଏପରି ହେବା ଉଚିତ୍ ନୁହେଁ । ସେଠାକାର ସବୁକିଛି ଉଦ୍ୟମ ପ୍ରସ୍ତୁତି ଓ ଅଗ୍ରଗତି ବିଷୟରେ ସାନ ଲେଖାଟିଏ ଲେଖି ଆଶିଷ ଭାଇଙ୍କ ପାଖକୁ ଶୀଘ୍ର ପଠାଇଦେବ । କୁମୁଦ ମଧ କିଛି ଲେଖୁ । କେଶରୀ ତ କେତେ କ'ଣ ଲେଖି ପାରିବ ।......

**ଭୁବନେଶ୍ୱର, ୧୧ ।୩ ।୯୪**

.........ନିଜର ବିଶ୍ୱାସ ଅନୁସାରେ ସଫଳ ହେବାପରି ଲାଗୁଥିବା ପର୍ଯ୍ୟନ୍ତ ଆମେ ଭଗବାନଙ୍କ ପାଖରେ କୃତଜ୍ଞ ରହିବା । ସଫଳ ନ ହେଲେ ତଥାପି ନିଜର ଅସମର୍ଥତା ସକାଶେ ନିଜକୁ ଗାଳି ଦେବା ନାହିଁ । ନିଜ ଭିତରେ ଥିବା ସେହି ଅତି କୋମଳ ହୃଦୟଟି ଉପରେ ଆସ୍ଥା ରଖିବା ଓ ଖୁସୀରେ ବାଟ ଚାଲୁଥିବା । ଦିନେ ଦିନେ ଖୋଜେ ବାଟ ଚାଲି ନ ପାରିଲେ ମଧ ତଥାପି ଭିତରେ ବସିଥିବା ସେହି ଅସଲ 'ମୁଁ'ଟି ଉପରେ ମୋଟେ ରାଗ କରିବା ନାହିଁ ।

ଏଥର ବନ୍ଧୁବାନ୍ଧବ ନେଇ ଆସୁଛ ବୋଲି ଜାଣି ଖୁସୀ ହେଲି । ଝିଅକୁ ମଧ ଆଣିବ । ଆମ ଜୀବନରେ ଆମର ତଥାକଥିତ ନିଜର ପରିବାର ଏବଂ .......ସୁହୃତ ପରିବାର ମଧରେ ଆଦୌ କୌଣସି ଦୂରତା ରଖିବା ନାହିଁ ।

▢▢▢

# ପୃଷ୍ଠ ବନ୍ଧ

୧୯୭୫ ଜୁଲାଇ ୧୫ରେ ବ୍ରହ୍ମପୁରଠାରେ ଏକ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଆରମ୍ଭ ହେବ ଓ ମୁଁ ତା'ର ଦାୟିତ୍ୱରେ ରହିବି ବୋଲି ଶ୍ରୀ ପ୍ରପତ୍ତି ମୋତେ କହିଥିଲେ । ତା'ପୂର୍ବରୁ ଓଡ଼ିଶାର ପ୍ରଥମ ଶିକ୍ଷାକେନ୍ଦ୍ର, ଯାହା ଭୁବନେଶ୍ୱର, ୟୁନିଟ-୨ରେ ଆରମ୍ଭ ହୋଇଥିଲା, ତାକୁ ଦେଖିବାକୁ, ସେଠୁ କିଛି ଶିଖିବାକୁ ସେଇ ଜୁଲାଇ ପ୍ରଥମ ସପ୍ତାହରେ ଆସି ସପ୍ତାହକ ପାଇଁ ରହିଲି । ଦିନସାରା ବିଭିନ୍ନ ଶ୍ରେଣୀ ପ୍ରକୋଷ୍ଠ ବାହାରେ ରହି ଦେଖୁଥିଲି ଓ ଯାହା ପାଇଲି ତାକୁ ସାଇତି ରଖୁଥିଲି । ସପ୍ତାହକ ପରେ ବ୍ରହ୍ମପୁର ଫେରି ଆସିଲି । ଶିକ୍ଷା କେନ୍ଦ୍ର ଆରମ୍ଭ ହେଲା । ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ ସେତେବେଳେ ୟୁନିଟ୍-୨ ଶିକ୍ଷାକେନ୍ଦ୍ରର ନିର୍ଦ୍ଦେଶକ ଥିଲେ, ଅଥଚ ଜଣେ ସାଧାରଣ ଶିକ୍ଷକ ଭଳି ପିଲାଙ୍କର କ୍ଲାସ ନେଉଥିଲେ । ପିଲାଠାରୁ  ବୟସ୍କ ପର୍ଯ୍ୟନ୍ତ ତାଙ୍କୁ ଚିତ୍ତଭାଇ ବୋଲି ଜାଣୁଥିଲେ । ସେଠି ରହିବା ସମୟରେ ଚିତ୍ତଭାଇ ଓ ମୁଁ ଗୋଟିଏ ସ୍ଥାନରେ ମୁହାଁ ମୁହିଁ ହୋଇ ଖାଇ ବସୁଥିଲୁ ଦୁଇଓଳା । ରାତିରେ ଶୋଇବା ପୂର୍ବରୁ ସିଏ ତାଙ୍କ ବଖରା ଆଗରେ ଘାସ ପଡିଆରେ କିଛି ସମୟ ଏକାଏକା ପଦଚ୍ଚରଣା କରୁଥିଲେ । ସେତିକିବେଳେ ପ୍ରାର୍ଥନାଘର ପାଖ ଏକ ବଖରାରେ ଟେବୁଲ ଉପରେ ଶୋଇବା ପାଇଁ ମଶାରି ଟାଙ୍ଗୁଥିଲି । ଚିତ୍ତଭାଇ ଆସି ସେହି କାମରେ ମୋତେ ସହଯୋଗ କରୁଥିଲେ । ଖାଇବା ସମୟରେ ଓ ଶୋଇବା ପୂର୍ବରୁ ଯାହା ଆମର ଆଳାପ ହୋଇଥିଲା, ଖୁବ୍ କମ୍ ଶବ୍ଦରେ, କମ୍ ସମୟ ମଧ୍ୟରେ । ଏହା ଥିଲା ମୋ'ର ପ୍ରଥମ ପରିଚୟ ଓ ପ୍ରଥମ ଆଳାପ ଚିତ୍ତଭାଇଙ୍କ ସହ ।

ଶିକ୍ଷାକେନ୍ଦ୍ରରେ ମୁଁ ଶିକ୍ଷକ ଥିବା ସମୟରେ ସେ ଅନେକ ଥର ଆସିଛନ୍ତି । କେବଳ ଗୋଟିଏ ଥର ବ୍ୟତୀତ ଅନ୍ୟ ସବୁଥର ସିଏ ଶିକ୍ଷାକେନ୍ଦ୍ରରେ ହିଁ ରହିଛନ୍ତି । ଶିକ୍ଷାକେନ୍ଦ୍ରରେ ସେତେବେଳେ କେବଳ ମୁଁ ହିଁ ରହୁଥିଲି । ତେଣୁ, ସାଙ୍ଗ ହୋଇ ରୋଷେଇ କରିଛୁ, ସାଙ୍ଗ ହୋଇ ଶୋଇଛୁ ଓ ସାଙ୍ଗ ହୋଇ ଆଳାପ କରିଛୁ । ଶିକ୍ଷାକେନ୍ଦ୍ରର ଶୁଭେଚ୍ଛୁ ଓ ସଦସ୍ୟଙ୍କ ଘରକୁ କୁଣିଆ ହୋଇ ସାଙ୍ଗ ହୋଇ ଯାଇଛୁ । ଶିକ୍ଷାକେନ୍ଦ୍ରରେ ଥିବାବେଳେ ସିଏ ପ୍ରାୟ ଶ୍ରେଣୀକୁ ଯାଇ ପିଲାଙ୍କୁ ପାଠ ପଢ଼ାଉଥିଲେ । ତେଣୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଛି ।

ସେଦିନରୁ ସିଏ ମଝିରେ ମଝିରେ ବ୍ରହ୍ମପୁର ଶିକ୍ଷାକେନ୍ଦ୍ରକୁ ଆସିଛନ୍ତି, ବିଭିନ୍ନ ସଭା ସମ୍ମିଳନୀରେ ଯୋଗଦେବାକୁ ଆସିଛନ୍ତି । ମୁଁ ମଧ୍ୟ ଭୁବନେଶ୍ୱର, କଟକ ଆଦି ସ୍ଥାନରେ ସଭା, ସମ୍ମିଳନୀ, ତାଲିମ ଆଦିରେ ଯୋଗ ଦେଇଛି । ଏସବୁ ଅବସରରେ ଆମେ ସୁଯୋଗ ପାଇବା ମାତ୍ରେ ବ୍ୟକ୍ତିଗତ ଠାରୁ ଅନୁଷ୍ଠାନ ଯାଏଁ, ଶିକ୍ଷା ଠାରୁ ସାଧନା ଯାଏ, ସାହିତ୍ୟ ଠାରୁ ଜୀବନ ଯାଏଁ ବିଭିନ୍ନ ବିଷୟରେ ଆଳାପ ଆଲୋଚନା କରିଛୁ ।

ସବୁକଥା ସବୁ ସମୟରେ ସମସ୍ତଙ୍କୁ କହି ହୁଏନି, ପଚାରି ହୁଏନି, ତେଣୁ ସେତେବେଳେ ଏକମାତ୍ର ମାଧ୍ୟମ ପତ୍ରକୁ ହିଁ ନିମିତ୍ତ କରିବାକୁ ହେଉଥିଲା । ଚିତ୍ତଭାଇଙ୍କୁ କିନ୍ତୁ ସବୁକଥା, ସବୁସମୟରେ କହିହେଉଥିଲା, ଲେଖି ହେଉଥିଲା । ତାଙ୍କ ପାଖରେ କିଛି ଲୁଚାଇ ହେଉନଥିଲା । ଲୁଚାଇବାକୁ ଇଚ୍ଛା ମଧ୍ୟ ହେଉ ନଥିଲା । ତାଙ୍କ ପାଖରେ ଲୁଚାଇବାର ଅର୍ଥ ହେଉଥିଲା, ନିଜ ପାଖର ଲୁଚିବା ! ତେଣୁ ଜୀବନର, ମନର, ହୃଦୟର ସବୁକଥା ଲେଖି ହେଉଥିଲା । ଅକାଳେ ସକାଳେ ଦେଖା ହେବା ଦ୍ୱାରା ଖୁସୀର ଆତିଶଯ୍ୟରେ ଅନେକ କଥା ଭୁଲି ହୋଇଯାଉଥିଲା ଏବଂ ପରେ ମନକୁ ଆସୁଥିଲା । ତେଣୁ, ଚିଠିରେ ଲେଖିହେଉଥିଲା । ସିଏ ମଧ୍ୟ ବିଳମ୍ବ ନକରି ସଙ୍ଗେ ସଙ୍ଗେ ଚିଠି ଲେଖୁଥିଲେ । ଏଇ ପତ୍ରାଳାପ ଆଜିଯାଏଁ ଚାଲୁ ରହିଛି । ଏବଂ, ଏହା ଫଳରେ ମୁଁ ବହୁତ ଉପକାର ପାଇଛି ।

ଯେଉଁ ପତ୍ରସବୁ ମୋ ପାଖକୁ ଆସୁଥିଲା, ସେଥିରୁ କିଛି ହଜିଯିବା ସତ୍ତ୍ୱେ ମୋ'ପାଖରେ ବେଶ୍ କିଛି ଜମା ହୋଇ ରହିଲା । ମଝିରେ ମଝିରେ ପୁରୁଣା ଚିଠି ଗୁଡିକୁ ପଢ଼ି ହତାଶା, ନିରାଶା, ଦୁଃଖ ଓ ଅନୁଶୋଚନାକୁ ଡେଇଁ ଯିବାକୁ ବଳ ପାଉଥିଲି । ତେଣୁ, ଥରେ ମନକୁ ଆସିଲା, ମୋ'ର ଚିଠି ସବୁକୁ ନେଇ ଗୋଟିଏ ବହି କରିଦେଲେ, ମୋ ହାତପାଖରେ, ଆଖିଆଗରେ ରହି ମୋତେ ଅଧିକ ବଳ ଦେବ! ମୋତେ ବଳଦେବା ସଙ୍ଗେ ସଙ୍ଗେ ଆଉ ଯେଉଁମାନେ ମୋ'ଭଳି ପରିସ୍ଥିତିରେ ଥିବେ ସେମାନଙ୍କୁ ମଧ୍ୟ ପ୍ରେରଣା ଦେବ । ଏପରି ବିଚାରୁଥିବା ବେଳେ, ପୁଣି ମନକୁ ଆସିଲା, ଅନ୍ୟମାନଙ୍କ ପାଖରେ ମଧ୍ୟ ଏପରି ପତ୍ରଥିବ, ଯାହା ମୋତେ ସାହାଯ୍ୟ କରିବ ! ତେଣୁ, ବନ୍ଧୁମାନଙ୍କୁ ଏକଥା କହିଲି, ଏବଂ ଅନୁରୋଧ କଲି । ଫଳରେ ଅନେକ ଭାଇଭଉଣୀ ସେମାନଙ୍କ ଚିଠିର ନକଲ ସବୁଦେଲେ । ଏସବୁ କଥା ଚିତ୍ତଭାଇଙ୍କୁ ଜଣାଇଲି । ଚିତ୍ତ ଭାଇ ସେସବୁକୁ 'ସୁହୃତ୍'ରେ ଛାପିବାକୁ ଅନୁମତି ଦେଲେ । ମୁଁ ଖୁସୀ ହୋଇ 'ସୁହୃତ୍'ରେ

ଚିଠି ଗୁଡିକୁ ସଂପୂର୍ଣ୍ଣ ସ୍ଥାନୀତ କଲି । ଚିତ୍ତଭାଇ ଖୁସୀ ହେଲେ ନାହିଁ, ଏବଂ ସଂଗ୍ରହକୁ ଦେଖିବାକୁ ଇଚ୍ଛା କଲେ । ସହସ୍ରାଧିକ ଚିଠିର ବୁଜୁଳାକୁ ମୁଁ ନେଇ ଆସିଲି । ସେ ନିଜେ କିଛି ଉଦ୍ଧୃତାଂଶ ବାହାର କଲେ ଓ 'ପତ୍ରରେ ଆଳାପ' ନାମରେ ତାହା ପ୍ରକାଶ ପାଇଲା । ବଳକା ଚିଠି ସବୁ ମୋ'ପାଖରେ ରହିଲା ।

ଏଇ ସଂକଳନର ଉଦ୍ଧୃତି ସବୁ ସବିତା ଅପା (ଡ.ସବିତା ଜେନା) ବାଛି ବାହାର କଲେ । ଖୁସୀର କଥା ଏହା ଏକ ବହି ରୂପ ନେବାକୁ ଯାଉଛି । ଆହୁରି ଅନେକ ଚିଠି ଅନେକ ଭାଇ ଭଉଣୀଙ୍କ ପାଖରେ ରହିଛି । ସେସବୁ ସଂଗ୍ରହ ହୋଇପାରିଲେ, ଏଇପରି ଆହୁରି ଅନେକ ସଂକଳନ ପ୍ରକାଶ ପାଇପାରିବ । କାରଣ ଲେଖକଙ୍କର ବନ୍ଧୁ ଓଡ଼ିଶାରୁ ଆରମ୍ଭ କରି ବିଭିନ୍ନ ପ୍ରଦେଶରେ ଏବଂ ଡ଼େନ୍‌ମାର୍କ, ଜର୍ମାନ୍, ଫିନ୍‌ଲ୍ୟାଣ୍ଡ, ଇସ୍ରାଏଲ୍, ଚୀନ, ଋଷିଆ, ଆମେରିକା ଆଦି ବିଭିନ୍ନ ଦେଶରେ ଏବେ ବି ଅଛନ୍ତି । ପୁଣି ଚିଠିଗୁଡାକରୁ ବାଛି ବାହାର କଲେ ସେଥିରେ ଶିକ୍ଷା, ସାହିତ୍ୟ, ସାଧନା, ସ୍ୱାସ୍ଥ୍ୟ, ମନସ୍ତତ୍ତ୍ୱ ଆଦି ଜୀବନର ବିଭିନ୍ନ ଦିଗ ବିଷୟରେ ଅନେକ ଗହନ କଥା ଜାଣିହେବ, ଆଗକୁ ବାଟ ଚାଲିବାକୁ ବଳ ଓ ଆଲୋକ ମଧ୍ୟ ମିଳିଯାଇ ପାରିବ । ପତ୍ର ଲେଖକ ଗାନ୍ଧୀ, ରବୀନ୍ଦ୍ରଙ୍କୁ ଛୁଇଁବା ପରେ ମାଆ ଓ ଶ୍ରୀଅରବିନ୍ଦଙ୍କୁ ସ୍ପର୍ଶ କରିଛନ୍ତି । ତେଣୁ, ମାଆ, ଶ୍ରୀଅରବିନ୍ଦଙ୍କ ଅନୁଗାମୀମାନଙ୍କ ବ୍ୟତୀତ ଗାନ୍ଧୀ ଓ ରବୀନ୍ଦ୍ରନାଥଙ୍କର ଅନୁଗାମୀମାନଙ୍କ ମଧ୍ୟରେ ଲେଖକଙ୍କର ଅନେକ ବନ୍ଧୁଥିଲେ ଓ ଏବେ ବି ରହିଛନ୍ତି । କିନ୍ତୁ, ସେମାନଙ୍କ ଠିକଣା ପାଇ ସେମାନଙ୍କଠାରୁ ପତ୍ର ସଂଗ୍ରହ କରିବା କାଠିକର ପାଠ । ପୁଣି ଚମ୍ପତିମୁଣ୍ଡା ଓ ଆଗ୍ରାରେ ଥିବା ସମୟରେ ଲେଖକଙ୍କ ଛାତ୍ରଛାତ୍ରୀଙ୍କ ସହ ଓ ବିଶ୍ୱଭାରତୀର ବନ୍ଧୁମାନଙ୍କ ସହ ଅନେକ ପତ୍ରାଳାପ ହୋଇଥିବ । କିନ୍ତୁ ସେସବୁ କ'ଣ ସଂଗ୍ରହ କରିବା ସମ୍ଭବ ହେବ ? ସେ ଚିଠି ସବୁ କ'ଣ ଆଉ ସତେ ଜୀବନରେ ଥିବ ? ସେସବୁ ଏବଂ ଆଉ ସବୁ ପତ୍ର ସଂଗ୍ରହ ହୋଇପାରିଲେ, ଲେଖକଙ୍କର ବ୍ୟକ୍ତିତ୍ୱର ଆହୁରି ଅନେକ ଦିଗ ଉନ୍ମୋଚିତ ହୋଇପାରିବ ଏବଂ ବିଭିନ୍ନ ବର୍ଗର ସବୁ ମଣିଷଙ୍କୁ ଜୀବନ ବହିବାରେ ସାହାଯ୍ୟ କରିବ । ଏଇ ସଂକଳନଟିର ଚିଠିସବୁ ଆମ ଶିକ୍ଷାକେନ୍ଦ୍ର ଓ ପାଠଚକ୍ରର ଭାଇଭଉଣୀଙ୍କୁ ଅବଶ୍ୟ ସାହାଯ୍ୟ କରିବ ବୋଲି ଆଶାକରୁଛି ।

ଆଶିଷ ପାଠୀ

ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଲ ନାହିଁ ବୋଲି ଦୁଃଖ କରିବ ନାହିଁ । ନିଜକୁ କଦାପି ଅଯୋଗ୍ୟ ବୋଲି ଭାବିବ ନାହିଁ । ନିଜକୁ ସବୁ ପରିସ୍ଥିତିରେ ବନ୍ଧୁଟିଏ ପରି ଦେଖୁଥିଲେ ନିଜ ଶକ୍ତିର ପରିଚୟ ଅବଶ୍ୟ ପାଇବ............

.....ଯିଏ ସେମାନଙ୍କ ଭାଷାରେ କଥା କହି ନ ପାରୁଛି, ଆଦିବାସୀମାନେ କାହିଁକି ସେମାନଙ୍କୁ ନିଜ ଲୋକପରି ଏତେ ବିଶ୍ୱାସ କରିବେ ।.......

....ଆଦିବାସୀ ଅଞ୍ଚଳରୁ ପୂର୍ଣ୍ଣ ସମର୍ଥ ହୋଇ ଯଦି କେତେଜଣ ବାହାରିବେ, ସେହି ଅଞ୍ଚଳର ଉନ୍ନତି ଓ ଅଗ୍ରଗତି ବିଷୟରେ ସ୍ୱପ୍ନ ଦେଖିବେ, ତେବେ ସେଠାରେ କେତେ କ'ଣ ଘଟିବ ।....

......ପ୍ରତି ଶିକ୍ଷାକେନ୍ଦ୍ରରେ ଅନ୍ତତଃ ୩/୪ଜଣ ବ୍ୟକ୍ତି ଆମ କାର୍ଯ୍ୟଗୁଡିକର ମର୍ମକୁ ଯଥାର୍ଥ ଭାବରେ ବୁଝିଥିଲେ ଓ ସେହି ଅନୁସାରେ ଜୀବନଟିଏ ବଞ୍ଚିବାକୁ ଚେଷ୍ଟା କରୁଥିଲେ ଯାଇ ଶିକ୍ଷାକେନ୍ଦ୍ର ଗୁଡିକର ଅଗ୍ରଗତି ହୋଇପାରିବ ।........

......ଶିକ୍ଷାକେନ୍ଦ୍ର ପଛରେ ଗୋଟିଏ ବନ୍ଧୁଗୋଷ୍ଠୀ ନ ରହିବା ପର୍ଯ୍ୟନ୍ତ ଆମ ଶିକ୍ଷାର ବେଶୀ କିଛି ଉଦ୍ଦେଶ୍ୟ ଆଦୌ ସାଧିତ ହୋଇପାରିବ ନାହିଁ ।......